# ଯକ୍ଷ୍ମା ରୋଗ
# ସମ୍ପୂର୍ଣ୍ଣ ଭଲ ହୋଇପାରିବ



ଡକ୍ଟର ନିରଞ୍ଜନ ତ୍ରିପାଠୀ

# ଯକ୍ଷ୍ମାରୋଗ
# ସମ୍ପୂର୍ଣ୍ଣ ଭଲ ହୋଇପାରିବ

ଡକ୍ଟର ନିରଞ୍ଜନ ତ୍ରିପାଠୀ ଏମ୍.ଡି.

ଏଫ୍.ଆଇ.ସି.ପି., ଏଫ୍.ଆଇ.ସି.ସି., ଏଫ୍.ଆଇ.ସି.ଏନ୍.,
ଏଫ୍.ସି.ସି.ପି., ଏଫ୍.ଆଇ.ସି.ଏ. (ଆମେରିକା)

ଯୁକ୍ତରାଷ୍ଟ୍ର ଆମେରିକାସ୍ଥିତ ଆନ୍ତର୍ଜାତୀୟ
ବକ୍ଷ ଓ ହୃଦ୍ ରୋଗ ବିଶେଷଜ୍ଞ ଏକାଡ଼େମୀର ସମ୍ମାନିତ ସଦସ୍ୟ

ସନକ ପବ୍ଲିଶର୍ସ

# ଯକ୍ଷ୍ମା ରୋଗ ସମ୍ପୂର୍ଣ୍ଣ ଭଲ ହୋଇପାରିବ

ଲେଖକ :
**ଡକ୍ଟର ନିରଞ୍ଜନ ତ୍ରିପାଠୀ**
ଜୀବନ ବିକାଶ
ନିମସାହି, କଟକ - ୭୫୩ ୦୦୧
ଫୋନ୍ - ୬୨୨୮୮୭

ପ୍ରକାଶକ :
**ସନକ ପବ୍ଲିଶର୍ସ**
ବିଶ୍ୱନାଥଲେନ୍
କଟକ-୭୫୩୦୦୨

ପ୍ରଥମ ସଂସ୍କରଣ : ୧୯୯୭

ମୁଦ୍ରଣ :
**ଗ୍ରାଫ୍ 'ଏନ୍' ଗ୍ରାଫିକ୍ସ**
ଓଡ଼ିଆ ବଜାର, କଟକ-୧

ପ୍ରଚ୍ଛଦପଟ :
**ଶ୍ରୀ ଗୌତମ ସେନଗୁପ୍ତ**

ମୂଲ୍ୟ- ଟ ୬-୦୦ ମାତ୍ର

# ଯକ୍ଷ୍ମାରୋଗ ସମ୍ପୂର୍ଣ୍ଣ ଭଲ ହୋଇପାରିବ

ସୁଚିତ୍ରା ଏକ ମଫସଲ କଲେଜର ଇଂରାଜୀ ଅଧ୍ୟାପିକା । ବୟସ ୩୨ ବର୍ଷ । ଆକର୍ଷଣୀୟ ଚେହେରା । କଲେଜରେ ପଢ଼ିଲା ବେଳେ 'କଲେଜ୍ କୁଇନ୍' ଥିଲେ । ଖେଳ କୁଦ, ଡ୍ରାମା ଥିଏଟର, ଡିବେଟ୍‌ରେ ସୁଚିତ୍ରାଙ୍କ ଉପସ୍ଥିତି ସହପାଠୀମାନଙ୍କ ମନରେ ମୃଦୁଗୁଞ୍ଜରଣ ସୃଷ୍ଟି କରୁଥିଲା ।

ସୁଚିତ୍ରା ଭଲପାଇଥିଲେ ସହପାଠୀ ଅତନୁଙ୍କୁ । ଉଭୟ ବିବାହ ବନ୍ଧନରେ ଆବଦ୍ଧ ହୋଇଥିଲେ । ଅତନୁଙ୍କ ସହିତ ସୁଚିତ୍ରା ଚାଲିଯାଇଥିଲେ ଏହି ଦୂର ମଫସଲ କଲେଜକୁ ଅଧ୍ୟାପନା ପାଇଁ । ଅତନୁ କୌଣସି ଚାକିରି ବାକିରି କରନ୍ତି ନାହିଁ ।

ଏହା ମଧ୍ୟରେ ସୁଚିତ୍ରାଙ୍କ ପରିବାରକୁ କୋଳ ପୂର୍ଣ୍ଣ କରି ଆସିଛି ଅଭିଳାଷ । ଅଭିଳାଷଙ୍କ ଜନ୍ମ ସମୟରେ ସୁଚିତ୍ରା ବହୁକଷ୍ଟ ପାଇଥିଲେ । ମଫସଲ ଡାକ୍ତରଖାନାରୁ ତାଙ୍କୁ ସଦର ମହକୁମା ହସ୍‌ପିଟାଲକୁ ଆସିବାକୁ ପଡ଼ିଥିଲା । ସେଠାରେ ତାଙ୍କର ସିଜେରିଆନ୍ ସେ୍‌କସନ୍ ହୋଇ ପିଲା ଜନ୍ମ ହେଲା । ମୁମୂର୍ଷୁ ସୁଚିତ୍ରାଙ୍କ ଜୀବନ ରକ୍ଷା

ପାଇଁ ତିନି ବୋତଲ ରକ୍ତ ନେବାକୁ ପଡ଼ିଥିଲା । ପରିବାରର କେହି ଲୋକ ରକ୍ତ ଦେବାକୁ ନ ଥିଲେ ।

ଅଭିଳାଷ ଜନ୍ମପରେ ପ୍ରାୟ ସୁଚିତ୍ରା ସୁସ୍ଥ ଥିଲେ । ସାମାନ୍ୟ ଦୁର୍ବଳତା ଥିଲା । ଓଜନ କମି ଯାଉଥିଲା । ମଝିରେ ମଝିରେ କାଶ କଫ ଲାଗି ରହୁଥିଲା । କିନ୍ତୁ ଅଭିଳାଷର ବର୍ଷିକିଆ ଜନ୍ମଦିନ ଉତ୍ସବ ପାଳନ କରୁଥିବା ବେଳେ ତାଙ୍କର ଘନ ଘନ କାଶ ହୋଇ କାଶରେ ପୁଳା ପୁଳା ଲାଲ ଲାଲ ରକ୍ତ ପଡ଼ିଲା । ତାଙ୍କର ମୁଣ୍ଡ ବୁଲାଇ ଦେଲା । ସେ ପଡ଼ିଗଲେ ।

ପ୍ରାଥମିକ ଚିକିତ୍ସା ପରେ ଅତନୁ ସୁଚିତ୍ରାଙ୍କୁ ଧରି କଟକ ଆସିଲେ । ଏଠାରେ ଆନୁସଙ୍ଗିକ ପରୀକ୍ଷା ନିରୀକ୍ଷା ପରେ ଜଣାପଡ଼ିଲା ସୁଚିତ୍ରା ସଂକ୍ରାମକ ଯକ୍ଷ୍ମାରୋଗ ଭୋଗ କରୁଛନ୍ତି । ଅଭିଳାଷ ଜନ୍ମ ବେଳେ ରକ୍ତ ନେଇଥିବାରୁ ଏଡ଼୍‌ସ୍ ରୋଗ ଅଛି କି ନାହିଁ, ପରୀକ୍ଷା ପାଇଁ ରକ୍ତ ପଠାଯାଇଛି ।

ଅତନୁ ଡାକ୍ତରଙ୍କୁ ପଚାରିଲେ, ‘‘ଆମେ ତ ବେଶ୍ ସ୍ୱାସ୍ଥ୍ୟ ସଚେତନ । ଆମକୁ ଯକ୍ଷ୍ମାରୋଗ ହେଲା କିପରି ?

ଏତେ ପାଠପଢ଼ି ଆମେ ତ ଯକ୍ଷ୍ମାରୋଗ ଚିହ୍ନି ପାରିଲୁ ନାହିଁ ।

ସାଧାରଣ ଲୋକେ ଯକ୍ଷ୍ମାରୋଗ ହେଲେ ଚିହ୍ନିବେ କିପରି ?

ଡାକ୍ତର ଆରମ୍ଭ କଲେ ।

## ଫୁସ୍‌ଫୁସ୍‌ରେ ଯକ୍ଷ୍ମା ହେଲେ ଜାଣିବ କିପରି ?

ଦୁଇ ତିନି ସପ୍ତାହରୁ ଅଧିକ କାଶ ଲାଗି ରହିଲେ, ସଂଧ୍ୟାବେଳକୁ

ଜର ହୋଇ ପାହାନ୍ତା ପହରକୁ ଝାଳ ବୋହିଲେ, ଭୋକ ନ ଲାଗିଲେ, ଓଜନ କମିଲେ, ଛାତିରେ ଯନ୍ତ୍ରଣା ହେଲେ, କଫରେ ରକ୍ତ ପଡ଼ିଲେ, ଦୁର୍ବଳ ଲାଗିଲେ, ଅସୁସ୍ଥ ଅନୁଭବ କଲେ, ଏହା ଫୁସ୍‌ଫୁସ୍‌ର ଯକ୍ଷ୍ମାରୋଗ ହୋଇପାରେ । ଏଥିରୁ ଗୋଟିଏ ଦୁଇଟି ଲକ୍ଷଣ ଥିଲେ ମଧ୍ୟ ଯକ୍ଷ୍ମାରୋଗ ପାଇଁ ପରୀକ୍ଷା କରାଇନେବା ଉଚିତ୍ ।

ଯେ କୌଣସି ରୋଗୀର ତିନି ସପ୍ତାହରୁ ଅଧିକ କାଶକଫ ଲାଗି ରହିଲେ ଖଙ୍କାରରେ ଯକ୍ଷ୍ମାରୋଗ ଜୀବାଣୁ (ଏ.ଏଫ୍.ବି) ଅଛନ୍ତି କି ନାହିଁ ପରୀକ୍ଷା କରାଇନେବା ଅତି ଜରୁରୀ ।

## ଅନ୍ୟ ଅଙ୍ଗରେ ଯକ୍ଷ୍ମା ଲକ୍ଷଣ:

ଲସିକା ଗ୍ରନ୍ଥିରେ, ଯକ୍ଷ୍ମାହେଲେ ଏହି ଗ୍ରନ୍ଥି ଗୁଡ଼ିକ ଫୁଲି ଏକାଠି ହୋଇଯାଏ ଏବଂ ପରବର୍ତ୍ତୀ କାଳରେ ଫାଟିଯାଇ ଘା' ହୁଏ । ଏହି ଘା' ଶୁଖେ ନାହିଁ । ଏହି ପ୍ରକାର ଫୁଲା ଓ ଘା' ବେକ ମୂଳେ, କାଖ ତଳେ ଓ ଜଙ୍ଘ ସନ୍ଧିରେ ବେଶୀ ହୁଏ । ସେହି ଭଳି ଅନ୍ତନଳୀରେ ଯକ୍ଷ୍ମା ହେଲେ ଝାଡ଼ା, ଜର, ଦୁର୍ବଳତା ଲାଗିରହେ । ମସ୍ତିଷ୍କ ଯକ୍ଷ୍ମା (ଟିବି ମେନିନ୍‌ଜାଇଟିସ୍)ରେ ରୋଗୀର ମସ୍ତିଷ୍କ ଜ୍ୱର ହୁଏ । ମୁଣ୍ଡବିନ୍ଧେ । ବାନ୍ତି ହୁଏ, ରୋଗୀ ବାଉଳି ହୋଇ ଅଚେତ ହୋଇଯାଏ । ଯକ୍ଷ୍ମାରୋଗ ପାଇଁ ସଠିକ୍ ଚିକିତ୍ସା ନ କଲେ ରୋଗୀ ମୃତ୍ୟୁ ମୁଖରେ ପଡ଼େ । ବୃକ୍କରେ ଯକ୍ଷ୍ମା ହେଲେ ରୋଗୀର ଦୀର୍ଘଦିନ ଜର ହୁଏ । ପରିସ୍ରାରେ ରକ୍ତ ଓ ପୂଜ ଆସେ କିନ୍ତୁ ପରିସ୍ରା ପୋଡ଼ାଜଳା କିମ୍ବା କୌଣସି ଯନ୍ତ୍ରଣା ହୁଏ ନାହିଁ । ଜନନେନ୍ଦ୍ରିୟରେ ଯକ୍ଷ୍ମାରୋଗ ହେଲେ ସ୍ତ୍ରୀମାନଙ୍କର ଋତୁସ୍ରାବ ଓ ଋତୁ ଚକ୍ରରେ ଗଣ୍ଡଗୋଳ ହୁଏ । ତଳିପେଟରେ ଡିମ୍ବାଶୟ,

ଡିମ୍ବବାହିନୀନଳୀ ସବୁ ଫୁଲି ଏକ ଗୋଳା ସୃଷ୍ଟି ହୁଏ । ଜର ଓ ଦୁର୍ବଳତା ଲାଗିରହେ । ପରବର୍ତ୍ତୀ କାଳରେ ସନ୍ତାନ ସନ୍ତତି ହେବାରେ ଅସୁବିଧା ହୁଏ ।

## ଯକ୍ଷ୍ମାରୋଗ ଅତି ପୁରୁଣା :

ଯକ୍ଷ୍ମାରୋଗ ବହୁ ପୁରାତନ ରୋଗ । ମହର୍ଷି ଶୁଶ୍ରୁତ ଆଜକୁ ପାଞ୍ଚହଜାର ବର୍ଷତଳେ ରଚିତ ତାଙ୍କର 'ଶୁଶ୍ରୁତ ସଂହିତା'ରେ ଏହାକୁ 'କ୍ଷୟ' ରୋଗ ରୂପେ ବର୍ଣ୍ଣନା କରିଛନ୍ତି । ଏହି ରୋଗକୁ 'ରାଜଯକ୍ଷ୍ମା', 'ରାଜକାଶ' ମଧ୍ୟ କୁହାଯାଏ । ପୁରାକାଳରେ ରାଜା ମହାରାଜାଙ୍କଠାରୁ ଆରମ୍ଭ କରି ଗରିବ ଭିକାରି ପର୍ଯ୍ୟନ୍ତ ଏହି ରୋଗର ଶିକାର ହେଉଥିଲେ । ପାଞ୍ଚହଜାର ବର୍ଷତଳେ ସଯତ୍ନରେ ରକ୍ଷିତ ମିଶର ଦେଶର ରାଜା ମହାରାଜାମାନଙ୍କର ମୃତ ଶରୀର (ମମି)ରେ ମଧ୍ୟ ଏହି ରୋଗର ଚିହ୍ନ ଆବିଷ୍କୃତ ହୋଇଛି । ରୋମର ମହାରାଜା ଜୁଲିଅସ୍ ସିଜର ଏହି ରୋଗ ଭୋଗ କରୁଥିଲେ । ଭାରତରେ ପ୍ରବୀଣ ଗଣିତଜ୍ଞ ରାମାନୁଜମ୍, ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଶ୍ରୀ ଜବାହରଲାଲ ନେହେରୁଙ୍କ ପତ୍ନୀ ଶ୍ରୀମତୀ କମଳା ନେହେରୁ ଖୁବ୍ ଅଳ୍ପ ବୟସରେ ଏହି ରୋଗରେ ମୃତ୍ୟୁ ବରଣ କରିଥିଲେ ।

## ଯକ୍ଷ୍ମାରୋଗ ପାଇଁ ଔଷଧ ଉଦ୍ଭାବନ :

୧୯୪୦ ମସିହା ପର୍ଯ୍ୟନ୍ତ ଏ ରୋଗର କୌଣସି ଭଲ ଚିକିତ୍ସା ନଥିଲା । ଭଲ ଖାଦ୍ୟ, ମୁକ୍ତ ପବନ, ଲକ୍ଷଣ ମୁତାବକ ତୁଟୁକା ଔଷଧ ଏହି ରୋଗ ପାଇଁ ମୁଖ୍ୟ ଚିକିତ୍ସା ଥିଲା ।

ୱାକ୍ସମ୍ୟାନ୍ ପ୍ରଥମ ଯକ୍ଷ୍ମା ବିରୋଧୀ ଇଂଜେକ୍‌ସନ୍ ଷ୍ଟ୍ରେପ୍ଟୋମାଇସିନ୍, ୧୯୪୪ ମସିହାରେ ଉଦ୍ଭାବନ କରିଥିଲେ । ଫକ୍ସ ୧୯୫୩ ମସିହାରେ ଆଇସୋନିୟାଜାଇଡ୍ ନାମକ ଔଷଧ ଯକ୍ଷ୍ମାରୋଗ ଚିକିତ୍ସାରେ ବହୁଳ ପରିମାଣରେ ବ୍ୟବହାର କରିଥିଲେ । ଏହି ଦୁଇଟି ଔଷଧ ମଣି କାଞ୍ଚନ ସଂଯୋଗ ପରି ।

ହଜାର ହଜାର ବର୍ଷଧରି ଯକ୍ଷ୍ମାରୋଗରୂପୀ ରାକ୍ଷସ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ଯାହାକୁ ଧରୁଥିଲା ତାକୁ ମାରି ଦେଉଥିଲା । କିନ୍ତୁ ଏହି ଦୁଇଟି ଔଷଧ ବ୍ୟବହାର କଲା ପରେ, ବହୁ କଷ୍ଟ ପାଉଥିବା ରୋଗୀମାନେ ସଂପୂର୍ଣ୍ଣ ଭଲ ହୋଇଗଲେ । ତା' ପରେ ପି.ଏ.ଏସ୍, ଥାୟାସିଟାଜୋନ୍, ଇଥାମବୁଟଲ, ପାଇରିଜିନାମାଇଡ୍, ରିଫାମ୍ପିସିନ୍, ସାଇକ୍ଲୋସେରିନ୍, ଇଥିଓନାମାଇଡ୍ ପ୍ରଭୃତି ବହୁ ପ୍ରକାର ଔଷଧ ଏ ରୋଗର ଚିକିତ୍ସା ପାଇଁ ବର୍ତ୍ତମାନ ମିଳିଲାଣି । ୧୯୬୨ ମସିହାରେ ଭାରତ ସରକାର ଜାତୀୟ ଯକ୍ଷ୍ମାରୋଗ ନିରାକରଣ ଯୋଜନା ଆରମ୍ଭ କଲେ । ଏହି ଯୋଜନା ଫଳରେ ଦେଶର ପ୍ରତି ଜିଲ୍ଲା ସଦର ମହକୁମାରେ ୩୬୬ଟି ଯକ୍ଷ୍ମାରୋଗ ଚିକିତ୍ସା କେନ୍ଦ୍ର ପ୍ରତିଷ୍ଠା କରାଗଲା । ଯକ୍ଷ୍ମାରୋଗ ଚିକିତ୍ସା ପାଇଁ ଆବଶ୍ୟକୀୟ ଔଷଧ ମାଗଣାରେ ବିତରଣ କରାଗଲା । ନୈରାଶ୍ୟ ଅନ୍ଧକାରରେ ଜର୍ଜରିତ ଯକ୍ଷ୍ମାରୋଗଗ୍ରସ୍ତ ଆବାଳ ବୃଦ୍ଧ ବନିତା ଆଶାର ଆଲୋକ ଦେଖି ପାରିଲେ ।

କିନ୍ତୁ ଏହି ଆଶାର ଆଲୋକ ବେଶୀ ଦିନ ତିଷ୍ଠି ରହି ପାରିଲା ନାହିଁ । ଯକ୍ଷ୍ମାରୋଗର ଜୀବାଣୁମାନେ ଗୋଟିଏ ପରେ ଗୋଟିଏ

ଔଷଧକୁ ଭ୍ରୂକ୍ଷେପ ନକରି ବଢ଼ି ଚାଲିଲେ । ଫଳରେ ଏହି ରୋଗକୁ ପୃଥିବୀ ପୃଷ୍ଠରୁ ଲୋପ କରିବାର ସ୍ୱପ୍ନ ଆଶାରେ ହିଁ ରହିଗଲା ।

**ଯକ୍ଷ୍ମା ଓ ଏଡ଼୍‌ସ୍ :**

ତା'ପରେ ବିନାମେଘେ ବଜ୍ରପାତ । 'ବୋଝ ଉପରେ ନଳିତା ବିଡ଼ା' ପରି ୧୯୮୦ ମସିହାରେ ଆଉ ଏକ ନୂଆ ରୋଗ ଆସି ଉଭା ହେଲା । ତା'ର ନାମ ଏଡ଼୍‌ସ୍ । ୧୯୮୦ ମସିହା ପୂର୍ବରୁ କେହି ଏହି ନୂଆ ରୋଗର ନାମ ଶୁଣି ନଥିଲେ । ମାତ୍ର ପନ୍ଦର ବର୍ଷ ମଧ୍ୟରେ ଏହି ରୋଗ ମହାମାରୀ ରୂପ ଧାରଣ କରି ଲକ୍ଷ ଲକ୍ଷ ଲୋକଙ୍କୁ ମାରି ସାରିଲାଣି । ଖାଲି ସେତିକି ନୁହେଁ, ପୃଥିବୀର ଧନୀ ପାଶ୍ଚାତ୍ୟ ଦେଶମାନଙ୍କରେ ଏହି ରୋଗ କୋକୁଆ ଭୟ ସୃଷ୍ଟି କରିଛି । ପୃଥିବୀର ସବୁଦେଶ ଓ ଭାରତର ପ୍ରତି ପ୍ରଦେଶରେ ଏଡ଼୍‌ସ୍ ରୋଗ ଚିହ୍ନଟ ହୋଇସାରିଲାଣି ।

ଆଗରୁ ବୃଦ୍ଧ ରାକ୍ଷସ ଯକ୍ଷ୍ମାରୋଗ ଯୁଦ୍ଧ କରି କରି ଥକି ପଡ଼ି ବିଶ୍ରାମ ନେଉଥିଲା । ଏହି ସମୟରେ ଯୁବକ ରାକ୍ଷସ 'ଏଡ଼୍‌ସ୍' ବାହାସ୍ଫୋଟ ମାରି ମୃତ୍ୟୁର ଗର୍ଜନ ଦେଲା । ବୃଦ୍ଧ ଯକ୍ଷ୍ମା ରାକ୍ଷସ ମନରେ ପୁଣି ବଞ୍ଚିବା ଓ ବଢ଼ିବାର ଆଶା ଉଦ୍ରେକ ହେଲା । ମୃତ୍ୟୁର ତାଣ୍ଡବ ଲୀଳା ରଚେଇବା ପାଇଁ ସେ ଯୁବକ ରାକ୍ଷସ 'ଏଡ଼୍‌ସ୍' ଆଡ଼କୁ ହାତ ବଢ଼େଇଲା । ଦୁହେଁ ପରସ୍ପରକୁ କୋଳାଗ୍ରତ କଲେ । ବୃଦ୍ଧ ଯକ୍ଷ୍ମାରାକ୍ଷସ ଏବେ ଏଡ଼୍‌ସ୍ ରାକ୍ଷସ ସହାୟତାରେ ତରୁଣ ଅବସ୍ଥା ଆଡ଼କୁ ମୁହାଁଇଛି । ଜଙ୍ଗଲର ନିଆଁ ପରି ଚାରିଆଡ଼େ ବ୍ୟାପିଯିବାକୁ ବସିଲାଣି ।

## ଭାରତରେ ଯକ୍ଷ୍ମାରୋଗ ସମସ୍ୟା :

୧୯୯୭ ମସିହାରେ ଜନଗଣନା ଅନୁସାରେ ଭାରତର ଲୋକ ସଂଖ୍ୟା ପ୍ରାୟ ପଞ୍ଚାନବେ କୋଟି । ଏହି ଲୋକମାନଙ୍କ ମଧ୍ୟରୁ ପ୍ରାୟ କୋଟିଏ ପଚାଶ ଲକ୍ଷ ଲୋକଙ୍କର ଯକ୍ଷ୍ମାରୋଗ ଅଛି । ଏହି ସଂଖ୍ୟା ସାରା ଓଡ଼ିଶାର ଲୋକ ସଂଖ୍ୟାର ଅଧା ଏବଂ ପ୍ରତି ତିନିଶହ ଭାରତବାସୀଙ୍କ ମଧ୍ୟରୁ ଦୁଇଜଣଙ୍କର ଯକ୍ଷ୍ମାରୋଗ ଅଛି ବୋଲି ଧରାଯାଉଛି । ସବୁ ଯକ୍ଷ୍ମାରୋଗୀ ସଂକ୍ରାମକ ନୁହନ୍ତି । ଏହି ଯକ୍ଷ୍ମାରୋଗୀଙ୍କ ମଧ୍ୟରୁ ପ୍ରାୟ ପଇଁତିରିଶ ଲକ୍ଷ ରୋଗୀଙ୍କର ଖଙ୍କାରରେ ରୋଗର ଜୀବାଣୁ ନିର୍ଗତ ହେଉଥାନ୍ତି । ଫଳରେ ସେମାନେ ପରିବାର ଓ ସମାଜପାଇଁ ସଂକ୍ରାମକ ରୋଗ ସୃଷ୍ଟିକରନ୍ତି । ଏହି ସଂଖ୍ୟା କଟକ, ଭୁବନେଶ୍ୱର, ରାଉରକେଲା, ସମ୍ବଲପୁର, ବ୍ରହ୍ମପୁର ସହିତ ଓଡ଼ିଶାର ଆଉ ଦଶଟି ଛୋଟ ସହରର ଲୋକସଂଖ୍ୟା ମିଶାଇଲେ ତା'ଠାରୁ ଅଧିକ ।

ପ୍ରତିବର୍ଷ ଭାରତରେ ନୂତନ ଭାବରେ ପ୍ରାୟ ବାଇଶ ଲକ୍ଷ ଲୋକଙ୍କୁ ଯକ୍ଷ୍ମାରୋଗ ଆକ୍ରମଣ କରିଥାଏ । ସେମାନଙ୍କ ମଧ୍ୟରୁ ପ୍ରାୟ ଦଶଲକ୍ଷ ରୋଗୀ ସବୁବେଳେ ସଂକ୍ରାମକ ଅବସ୍ଥାରେ ଥାଆନ୍ତି ।

ପ୍ରତିବର୍ଷ ଭାରତରେ ପ୍ରାୟ ପାଞ୍ଚଲକ୍ଷ ଲୋକ ଯକ୍ଷ୍ମାରୋଗରେ ମୃତ୍ୟୁ ବରଣ କରୁଛନ୍ତି । ଏହି ସଂଖ୍ୟା କଟକ ନଗର ଲୋକ ସଂଖ୍ୟା ଠାରୁ ବେଶୀ । ଭାରତରେ ଯକ୍ଷ୍ମାରେ ଏବେବି ଦୈନିକ ଏକ ହଜାର ଲୋକ ମୃତ୍ୟୁ ମୁଖରେ ପଡ଼ନ୍ତି । ଖଙ୍କାରରେ ଜୀବାଣୁ ଛାଡୁଥିବା ଜଣେ ସଂକ୍ରାମକ ଯକ୍ଷ୍ମାରୋଗୀ, ବର୍ଷରେ ଦଶରୁ ପନ୍ଦର ଜଣ ସୁସ୍ଥ ଲୋକଙ୍କ ଦେହରେ ନୂତନ ଯକ୍ଷ୍ମାରୋଗ ସୃଷ୍ଟି କରାଇପାରନ୍ତି ।

## ଯକ୍ଷ୍ମାରୋଗ ହୁଏ କାହିଁକି ?

ଯକ୍ଷ୍ମା ବା ଟିବିରୋଗ ଏକ ଜୀବାଣୁ ଜନିତ ରୋଗ । ଏହି ଜୀବାଣୁର ନାମ ମାଇକୋ ବାକ୍ଟେରିଅମ ଟ୍ୟୁବର କୁଲୋସିସ୍ । ଏହି ଜୀବାଣୁ ଖାଲି ଆଖିରେ ଦେଖାଯାଏ ନାହିଁ । ସଂକ୍ରାମକ ରୋଗୀର ଖଙ୍କାରକୁ ଆବଶ୍ୟକ ଅନୁସାରେ ରଙ୍ଗଦେଇ ଅଣୁବୀକ୍ଷଣ ଯନ୍ତ୍ରତଳେ ପରୀକ୍ଷା କଲେ ଏହା ନାଲି ନାଲି କାଠି ଭଳି ଦେଖାଯାଏ । ସଂକ୍ରାମକ



ଯକ୍ଷ୍ମାରୋଗର ଜୀବାଣୁ ଆବିଷ୍କାର କରିଥିବା ମହାତ୍ମା ଡକ୍ଟର ରବର୍ଟ କକ୍

ରୋଗୀର ଖଙ୍କାର ଓ କାଶରେ ଥିବା ଯକ୍ଷ୍ମା ଜୀବାଣୁ ପବନ ସାହାଯ୍ୟରେ ସୁସ୍ଥ ଲୋକ ଦେହରେ ପ୍ରବେଶ କରନ୍ତି । ଏହାଦ୍ୱାରା ଶରୀରର ସବୁ ଅଙ୍ଗରେ ଯକ୍ଷ୍ମାରୋଗ ହୋଇପାରେ । କିନ୍ତୁ ଶହେ ଯକ୍ଷ୍ମାରୋଗୀଙ୍କ ଭିତରୁ ପ୍ରାୟ ଅଶୀଜଣଙ୍କୁ ଫୁସ୍‌ଫୁସ୍ ଯକ୍ଷ୍ମା ବା ରାଜକାଶ ହୋଇଥାଏ ।

## ଯକ୍ଷ୍ମାରୋଗର ପ୍ରକାର ଭେଦ :

ଶରୀରର ଯେଉଁ ଅଙ୍ଗକୁ ଯକ୍ଷ୍ମାରୋଗ ଆକ୍ରମଣ କରେ ସେହି ଅନୁସାରେ ରୋଗର ପ୍ରକାର ଭେଦ ହୁଏ । ଫଳରେ ଯକ୍ଷ୍ମା ରୋଗଗୁଡ଼ିକ ହେଲା:-

୧ - ଫୁସ୍‌ଫୁସ୍ ଯକ୍ଷ୍ମା (ପଲମୋନାରୀ ଟ୍ୟୁବରକୁଲୋସିସ୍) ଶତକଡ଼ା-ଅଶୀଭାଗ ।

୨ -ଆଉ କୋଡ଼ିଏ ଭାଗ ହେଲେ

କ) ଲସିକା ଗ୍ରନ୍ଥି ଯକ୍ଷ୍ମା (ଟିବି ଲିମ୍ଫାଡ଼ିନାଇଟିସ୍)
ଖ) ହାଡ଼ ଓ ଗଣ୍ଠିର ଯକ୍ଷ୍ମା
ଗ) ମସ୍ତିଷ୍କ ଓ ସ୍ନାୟବିକ ଯକ୍ଷ୍ମା (ଟିବି ମେନିନ୍ ଜାଇଟିସ୍)
ଘ) ମୂତ୍ରନଳୀ, ବୃକକ୍ ଓ ଜନନେନ୍ଦ୍ରିୟରେ ଯକ୍ଷ୍ମା
ଙ) କ୍ଷୁଦ୍ର ଅନ୍ତରେ ଯକ୍ଷ୍ମା
ଚ) ଚର୍ମ ଯକ୍ଷ୍ମା ଇତ୍ୟାଦି ।

## ଫୁସ୍‌ଫୁସ୍ ଯକ୍ଷ୍ମା :

ଫୁସ୍‌ଫୁସ୍ ଯକ୍ଷ୍ମାରୋଗ ପୁଣି ଦୁଇ ପ୍ରକାରର । ଗୋଟିଏ ପ୍ରକାର ରୋଗୀଙ୍କର ଖଙ୍କାରରେ ଯକ୍ଷ୍ମାରୋଗ ଜୀବାଣୁ ଥାଆନ୍ତି । ଆଉ କେତେକଙ୍କର ଖଙ୍କାରରେ ଜୀବାଣୁ ନଥାନ୍ତି । ଖଙ୍କାରରେ ଯକ୍ଷ୍ମା ଜୀବାଣୁ ଥିବା ରୋଗୀମାନେ ସଂକ୍ରାମକ । ଜଣେ ସଂକ୍ରାମକ ଫୁସ୍‌ଫୁସ୍ ଯକ୍ଷ୍ମାରୋଗୀ ବର୍ଷକ ମଧ୍ୟରେ ପାଖରେ ଚଳାଚଳ ହେଉଥିବା ଦଶ, ପନ୍ଦର ଜଣ ସୁସ୍ଥ ଲୋକଙ୍କୁ ଯକ୍ଷ୍ମାରୋଗରେ ଆକ୍ରାନ୍ତ କରାଇପାରେ ।

ଶତକଡ଼ା ଅଶୀଭାଗ ଯକ୍ଷ୍ମାରୋଗୀ କେବଳ ଫୁସ୍‌ଫୁସ୍ ଯକ୍ଷ୍ମାରୋଗରେ ଆକ୍ରାନ୍ତ ହେଉଥିବାରୁ ଏହି ରୋଗୀମାନଙ୍କର ଖଙ୍କାର ପରୀକ୍ଷା କରିବା ନିହାତି ଜରୁରୀ ।

**ଅଣୁବୀକ୍ଷଣ ଯନ୍ତ୍ର ଦ୍ୱାରା ଖଙ୍କାର ପରୀକ୍ଷା :**

ଖଙ୍କାରକୁ ରଙ୍ଗଦେଇ ଅଣୁବୀକ୍ଷଣ ଯନ୍ତ୍ର ତଳେ ପରୀକ୍ଷା କରାଯାଏ । ଏଥିରେ ଯଦି ଯକ୍ଷ୍ମାରୋଗର ଜୀବାଣୁ ମିଳେ ତେବେ ଏହା ସଂକ୍ରାମକ ଯକ୍ଷ୍ମାରୋଗ ବୋଲି କୁହାଯାଏ । ଗୋଟିଏ ରୋଗୀର



ଅଣୁବୀକ୍ଷଣ ଯନ୍ତ୍ର ଦ୍ୱାରା ଖଙ୍କାର ପରୀକ୍ଷା

ତିନିଥର ଖଙ୍କାର ପରୀକ୍ଷା କରାଯାଏ । ପ୍ରଥମ ଥର ରୋଗୀ ସଙ୍ଗେ ସଙ୍ଗେ ଖଙ୍କାର କାଢ଼ି ଦିଏ । ଦ୍ୱିତୀୟ ଥର ରୋଗୀ ବାରଘଣ୍ଟାର ଖଙ୍କାର ରାତି ସୁଦ୍ଧା ଏକାଠି କରି ତହିଁ ଆର ଦିନ ସକାଳେ ପରୀକ୍ଷା ପାଇଁ

ଦିଏ । ତୃତୀୟ ଥର ରୋଗୀ ପ୍ରଥମ ଥର ପରି ତତ୍କାଳ ଖଙ୍କାର କାଢ଼ି ପରୀକ୍ଷା ପାଇଁ ଦିଏ । ଏହି ତିନୋଟି ପରୀକ୍ଷାରେ ଯଦି ଖଙ୍କାରରେ ଯକ୍ଷ୍ମାରୋଗର ଜୀବାଣୁ ମିଳିଲେ ତେବେ ରୋଗୀ ଅତି ସାଂଘାତିକ ସଂକ୍ରାମକ ଯକ୍ଷ୍ମାରୋଗ ଭୋଗୁଛି ବୋଲି କୁହାଯାଏ ।

ଆଜି କାଲି ଖଙ୍କାର ପରୀକ୍ଷା ଅତି ଗୁରୁତ୍ୱପୂର୍ଣ୍ଣ ହୋଇପଡ଼ିଛି । କେତେକ ରୋଗୀଙ୍କର ସଘନ ଚିକିତ୍ସା ଦ୍ୱାରା ମଧ୍ୟ ଯକ୍ଷ୍ମାରୋଗ ଜୀବାଣୁ ମରୁନାହାନ୍ତି । ଫଳରେ ପ୍ରତି ମାସରେ ଖଙ୍କାର ପରୀକ୍ଷା କରି ରୋଗ ଆୟତ ହେଉଛି କି ନାହିଁ ଜାଣିବାକୁ ପଡୁଛି । ଛାତିର ଏକ୍ସରେ ପରୀକ୍ଷାରେ ଯକ୍ଷ୍ମାରୋଗ ଜଣାପଡ଼େ । କିନ୍ତୁ ରୋଗ ବଢୁଛି ନା କମୁଛି ଜାଣିବା ପାଇଁ ଏକ୍ସରେ ଅପେକ୍ଷା ଖଙ୍କାର ପରୀକ୍ଷା ଅଧିକ ନିର୍ଭରଶୀଳ । ଏହି କାରଣରୁ ସଂକ୍ରାମକ ଯକ୍ଷ୍ମାରୋଗୀ ବାରମ୍ବାର ଖଙ୍କାର ପରୀକ୍ଷା କରାଇବା ଆବଶ୍ୟକ । ଏକ୍ସରେ ପରୀକ୍ଷାରେ ରୋଗୀ ସଂକ୍ରାମକ କି ନାହିଁ ଜଣାପଡ଼େ ନାହିଁ ।

## ରୋଗ ଚିହ୍ନିବା ପାଇଁ ଅନ୍ୟାନ୍ୟ ପରୀକ୍ଷା :

ଖଙ୍କାର ଓ କଫ ପରୀକ୍ଷା ବ୍ୟତୀତ, ଛାତି ଏକ୍ସରେ, ଯକ୍ଷ୍ମା ହୋଇଥିବା ଅଙ୍ଗର ମାଂସ ପରୀକ୍ଷା (ବାୟୋପ୍ସି), ରକ୍ତର ଇ.ଏସ୍.ଆର. ଆଦି କେତେକ ପରୀକ୍ଷା, ମାଣ୍ଟୁକ୍ସ୍ ଟେଷ୍ଟ, ଡାଇବେଟିସ୍, ଏଡ୍ସ୍ ଭଳି କେତେକ ସହଯୋଗୀ ରୋଗମାନଙ୍କ ପାଇଁ ଆନୁଷଙ୍ଗିକ ପରୀକ୍ଷା ରୋଗ ନିଦାନରେ ସାହାଯ୍ୟ କରିଥାଏ ।

## ଯକ୍ଷ୍ମାରୋଗର ଔଷଧ ଚିକିତ୍ସା :

ଔଷଧ ଚିକିତ୍ସା ଦ୍ୱାରା ଯକ୍ଷ୍ମାରୋଗ ସଂପୂର୍ଣ୍ଣ ଭଲ ହୋଇଯାଏ । କିନ୍ତୁ ଏହି ଚିକିତ୍ସା ଛଅମାସରୁ ନଅମାସ ଡାକ୍ତରଙ୍କ ପରାମର୍ଶ ଅନୁସାରେ ଚାଲୁ ରଖାଯାଏ । ବାରମ୍ବାର ଏକ୍ସରେ, ଖଙ୍କାରରେ ଓ ଲକ୍ଷଣରେ ଉନ୍ନତିରୁ ଛାତିଯକ୍ଷ୍ମାରୋଗ ନିୟନ୍ତ୍ରଣରେ ରହୁଛି କି ନାହିଁ ଜାଣିହୁଏ ।

## ମୂଖ୍ୟ ଔଷଧ :

ଯକ୍ଷ୍ମାରୋଗ ପାଇଁ ମୂଖ୍ୟ ଔଷଧ ଗୁଡ଼ିକ ହେଲେ ଆଇ.ଏନ୍.ଏଚ୍., ରିଫାମ୍‌ପିସିନ୍, ପାଇରିଜିନାମାଇଡ୍, ଇଥାମ୍ବୁଟଲ ପ୍ରଭୃତି ଖାଇବା ଔଷଧ ଓ ଷ୍ଟ୍ରେପ୍ଟୋମାଇସିନ୍ ଇଂଜେକ୍‌ସନ୍ ।

ନୂଆକରି ଚିହ୍ନାପଡ଼ିଥିବା ଯକ୍ଷ୍ମାରୋଗରେ ଏହି ଚାରି ପ୍ରକାର ବଟିକା ଏକସଙ୍ଗରେ ଦୁଇମାସ ଖାଇବାକୁ ଦିଆଯାଏ । ଦୁଇମାସ ସଘନ ଚିକିତ୍ସାପରେ କେବଳ ରିଫାମ୍‌ପିସିନ୍ ଓ ଆଇ.ଏନ୍.ଏଚ୍. ବଟିକା ଆଉ ଚାରିମାସ ପାଇଁ ଖାଇବାକୁ ଦିଆଯାଏ । ଏହା ମଧ୍ୟରେ ପ୍ରତି ଦୁଇମାସ ଅନ୍ତରରେ କଫ ରକ୍ତ ଓ ଛାତି ଏକ୍ସରେ ପରୀକ୍ଷାକରି ରୋଗର ନିଦାନ କରି ଔଷଧର ପରିମାଣ, ସମୟ କମ୍‌ବେଶୀ କରାଯାଏ ।

## ଜାତୀୟ ଯକ୍ଷ୍ମାରୋଗ ନିରାକରଣ ଯୋଜନା :

ଯକ୍ଷ୍ମାରୋଗ ପାଇଁ ସଘନ ଔଷଧ ଚିକିତ୍ସା ବ୍ୟୟବହୁଳ । ମଧ୍ୟବିତ୍ତ ଓ ଗରିବ ଲୋକମାନେ ଅଳ୍ପଦିନ ପାଇଁ ଔଷଧ ଖାଇଦେଇ ରୋଗ

ସାମାନ୍ୟ ଉଣା ହୋଇଗଲେ ମଝିରେ ମଝିରେ ଔଷଧ ଛାଡ଼ି ଦେଉଥିବାରୁ ଏବେ ଜାତୀୟସ୍ତରରେ ବିପତ୍ତି ଦେଖା ଦେଇଛି । କେତେକ ଯକ୍ଷ୍ମାରୋଗୀଙ୍କ କ୍ଷେତ୍ରରେ ଏହି ଜୀବାଣୁମାନେ ଔଷଧକୁ ମାନୁ ନାହାନ୍ତି । ଔଷଧ ଯେପରି କାଟୁ କରିବା କଥା ସେପରି କାଟୁ କରୁନାହିଁ । ଏଭଳି କ୍ଷେତ୍ରରେ ଯକ୍ଷ୍ମାରୋଗ ଚିକିତ୍ସା ପାଇଁ ବହୁ ଖର୍ଚ୍ଚାନ୍ତ ଓ ହଇରାଣ ହେବାକୁ ପଡ଼ିଥାଏ । ଏ ପ୍ରକାର ଜୀବାଣୁମାନଙ୍କ ଦ୍ୱାରା ସଂକ୍ରମିତ ଅନେକ ରୋଗୀ ଅକାଳରେ ମୃତ୍ୟୁବରଣ କରନ୍ତି ।

ସେହି ସବୁ କଥାକୁ ଆଖି ଆଗରେ ରଖି ଜାତୀୟ ଯକ୍ଷ୍ମା ନିରାକରଣ ଯୋଜନା ଅତିକମ୍‌ରେ ଶତକଡ଼ା ଅଶୀଭାଗ ଖଙ୍କାରରେ ଜୀବାଣୁ ଥିବା ନୂଆ ଯକ୍ଷ୍ମାରୋଗୀଙ୍କୁ ସଂପୂର୍ଣ୍ଣ ସୁସ୍ଥ କରିବାର ଲକ୍ଷ୍ୟ ନେଇ କାର୍ଯ୍ୟ କରୁଅଛି ।

ସେଥିପାଇଁ ଆମ ରାଜ୍ୟରେ ମେଡ଼ିକାଲ କଲେଜ ଗୁଡ଼ିକର ଯକ୍ଷ୍ମା ଓ ଛାତିରୋଗ ବିଭାଗ, ଯକ୍ଷ୍ମାରୋଗ ଚିକିତ୍ସା ପାଇଁ ଥିବା ସ୍ୱତନ୍ତ୍ର ହସ୍‌ପିଟାଲ, ଜିଲ୍ଲା, ସବଡ଼ିଭିଜନର ସଦର ମହକୁମା, ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରରେ ସ୍ୱତନ୍ତ୍ର ଯୋଜନା କାର୍ଯ୍ୟକାରୀ କରାଯାଉଛି ।

ସେହି ଅନୁସାରେ ଯକ୍ଷ୍ମାରୋଗ କେନ୍ଦ୍ରମାନଙ୍କରେ ନୂତନ ପୁରାତନ ପ୍ରତି ଯକ୍ଷ୍ମାରୋଗୀଙ୍କ ନାମ ଠିକଣା ଓ ରୋଗ ସମ୍ବନ୍ଧୀୟ ବିବରଣୀ ରେଜେଷ୍ଟ୍ରି କରାଯାଉଛି । ନିର୍ଦ୍ଦିଷ୍ଟ ସମୟ ବ୍ୟବଧାନରେ ସେମାନଙ୍କର ଖଙ୍କାର ପରୀକ୍ଷା, ରକ୍ତ ପରୀକ୍ଷା ଓ ଛାତି ଏକ୍ସରେ ଇତ୍ୟାଦି କରାଯାଉଛି । ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଔଷଧ ଗୁଡ଼ିକ ଦିଆଯାଉଛି । ଏହି କାର୍ଯ୍ୟରେ ସ୍ୱେଚ୍ଛାସେବୀ ଅନୁଷ୍ଠାନ, ସରକାରୀ ଓ ବେସରକାରୀ ଡାକ୍ତର,

ହୋମିଓପାଥ ଓ କବିରାଜମାନଙ୍କର ସାହାଯ୍ୟ ମଧ୍ୟ ନିଆଯାଉଛି । ଏହା ଦ୍ୱାରା ଅଧିକ ରୋଗୀ କିପରି ଯକ୍ଷ୍ମାରୋଗ ଚିକିତ୍ସାର ସୁବିଧା ସୁଯୋଗ ପାଇପାରିବେ, ତା'ର ବ୍ୟବସ୍ଥା ହୋଇପାରିବ ।

## ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ଚିକିତ୍ସା :

ସାଧାରଣ ରୋଗ ସୃଷ୍ଟିକାରୀ ଜୀବାଣୁଗୁଡ଼ିକ ଦଶମିନିଟରୁ କୋଡ଼ିଏ ମିନିଟ ମଧ୍ୟରେ ବୃଦ୍ଧିପାଆନ୍ତି । କିନ୍ତୁ ଯକ୍ଷ୍ମାରୋଗ ଜୀବାଣୁ ଗୁଡ଼ିକ ପ୍ରତି ଅଠର ଘଣ୍ଟାରେ ବୃଦ୍ଧି ପାଇଥାଆନ୍ତି । ସେଥିପାଇଁ ଯକ୍ଷ୍ମାରୋଗ ପାଇଁ ଦୈନିକ ଔଷଧ ନ ଖାଇ ଠିକ୍ ଠିକ୍ ଭାବରେ ସପ୍ତାହରେ ଦୁଇ କିମ୍ବା ତିନି ଥର ଖାଇଲେ ଚିକିତ୍ସା ମଧ୍ୟ ଫଳପ୍ରଦ ହୋଇଥାଏ । ଏହି ପ୍ରକାର ଚିକିତ୍ସା ଭାରତର ଚେନାଇ ନଗରରେ ୧୯୫୦ ମସିହାରେ ପ୍ରଥମେ ଆରମ୍ଭ କରାଯାଇଥିଲା । ଏଥିରେ ରୋଗୀ ସ୍ୱାସ୍ଥ୍ୟକର୍ମୀଙ୍କ ଆଗରେ ଔଷଧ ଖାଆନ୍ତି ଓ ଏହି ପ୍ରକାର ଉପାୟରେ ଚିକିତ୍ସାରେ କମ୍ ଖର୍ଚ୍ଚ ହୁଏ ।

## ଚିକିତ୍ସାର କୁପରିଣାମ :

ଔଷଧ ଉପଚାର ସମୟରେ କୌଣସି କୁପରିଣାମ ଘଟିଲେ ନିଜ ଡାକ୍ତରଙ୍କୁ ପରାମର୍ଶ କରିବା ଉଚିତ । ମନଇଚ୍ଛା ଔଷଧ ବନ୍ଦ କରିବା କି ବଦଳାଇବା ଉଚିତ ନୁହେଁ ।

ଔଷଧ ଖାଉଥିବା ବେଳେ କେତେକ ରୋଗୀଙ୍କର ଅଇ ଉଠେ । ବାନ୍ତି ହୁଏ । ଅସୁସ୍ଥ ଲାଗେ । କାହାର ଗଣ୍ଡିରେ ଦରଜ ହୁଏ । ଅଙ୍ଗ ପ୍ରତ୍ୟଙ୍ଗରେ ବଧିରା ଭାବ ଆସେ । ଚର୍ମ ସୁଲୁ ସୁଲୁ ହୁଏ । ପରିସ୍ରା

ଗାଢ଼ ହଳଦିଆ କିମ୍ବା ଲାଲ ହୁଏ, ଆଖି ହଳଦିଆ ହୁଏ, ଚର୍ମରେ ବ୍ରଣ ଭଳି ଲାଲ ଫୁଲା ପଡ଼ି କାମଳ ରୋଗ ସୃଷ୍ଟି ହୁଏ । ଏଭଳି ହେଲେ ଡ଼ାକ୍ତର ଆନୁସଙ୍ଗିକ ଅନ୍ୟାନ୍ୟ ଔଷଧ ଦେଇ ଏଗୁଡ଼ିକୁ ଭଲ କରନ୍ତି ।

## ଚିକିତ୍ସାର ଫଳାଫଳ :

ଔଷଧ ଓ ଉପଚାର ଆରମ୍ଭ ହେଲାପରେ, ଜ୍ୱର କମିଯାଏ । ଭୋକ ବଢ଼େ । କାଶ କମିଯାଏ । ଓଜନ ବଢ଼େ । ରୋଗୀ ନିଜକୁ ସୁସ୍ଥ ଅନୁଭବ କରେ । ଏହାର ମାନେ ନୁହେଁ ଯେ ରୋଗୀ ସଂପୂର୍ଣ୍ଣ ଭଲ ହୋଇଗଲେ । ଡାକ୍ତରଙ୍କ ନିର୍ଦ୍ଦେଶ ଅନୁସାରେ ଧାର୍ଯ୍ୟ ସମୟତକ ଔଷଧ ସେବନ କଲେ ହିଁ ସଂପୂର୍ଣ୍ଣ ଉପଶମ ସମ୍ଭବ ହେବ । ଲକ୍ଷଣ କମିଗଲେ ରୋଗୀ ତାଙ୍କର ଦୈନନ୍ଦିନ କାର୍ଯ୍ୟ ଓ ଚାକିରି ଇତ୍ୟାଦି କରିପାରିବେ । ଶେଯରେ ଶୋଇ ରହିବା ଆବଶ୍ୟକ ନାହିଁ । ପୁଷ୍ଟିକର ସୁଷମ ଖାଦ୍ୟ ଖାଇଲେ ଦେହର ଓଜନ ଶୀଘ୍ର ବଢ଼ିଯାଏ ।

## ରୋଗୀ ସଂପୂର୍ଣ୍ଣ ଭଲ ହେବ କେତେବେଳେ ?

ସଘନ ଚିକିତ୍ସାର ଛଅମାସ ପରେ ରୋଗୀର କଫ ଓ ଖଙ୍କାର ଦୁଇଥର ଯକ୍ଷ୍ମାରୋଗ ଜୀବାଣୁ (ଏ.ଏଫ୍.ବି) ପାଇଁ ପରୀକ୍ଷା କରାଯାଏ । ଯଦି ଏହି ଖଙ୍କାରରେ ଜୀବାଣୁ ନଥାନ୍ତି ତେବେ ରୋଗୀ ଭଲ ହୋଇ ଯାଇଛି ବୋଲି ସାର୍ଟିଫିକେଟ୍ ଦିଆଯାଏ । ସଘନ ଚିକିତ୍ସାପରେ ଖଙ୍କାରରେ ଏ.ଏଫ୍.ବି ବାହାରିଲେ ରୋଗ ଔଷଧ ମାନୁନାହିଁ (ଡ୍ରଗ ରେଜିଷ୍ଟାଣ୍ଟ ଟିବି) ବୋଲି ବିଚାର କରାଯାଏ । ଏହି ରୋଗୀମାନଙ୍କୁ ଡାକ୍ତରଖାନାରେ ରଖି ବ୍ୟୟ ବହୁଳ ଏକାଧିକ ଔଷଧ ଦ୍ୱାରା ପୁନର୍ବାର ଚିକିତ୍ସା କରାଯାଏ ।

## ଫୁସ୍‌ଫୁସ୍ ଯକ୍ଷ୍ମାରୋଗ ଚିକିତ୍ସା ନ କଲେ କ'ଣ ହେବ ?

ଆମ ଛାତିର ଦୁଇ ପଟରେ ଦୁଇଟି ଫୁସ୍‌ଫୁସ୍ ଅଛି । ଏହା ଶରୀରର ଏକ ଜଟିଳ ଅଙ୍ଗ । ଫୁଟବଲ୍ ବ୍ଲାଡ଼ର ଫୁଙ୍କିଲେ ଯେଭଳି ପ୍ରସାରିତ ହୁଏ, ଫୁସ୍‌ଫୁସ୍ ସେଭଳି ପ୍ରଶ୍ୱାସ ନେଲେ ପ୍ରସାରିତ ହୁଏ । ଫୁଟବଲ ବ୍ଲାଡ଼ର ଯେଭଳି ପବନ ଚାଲିଗଲେ ସଙ୍କୁଚିତ ହୁଏ, ସେହିଭଳି ନିଃଶ୍ୱାସ ଚାଲିଗଲେ ଫୁସ୍‌ଫୁସ୍ ସଂକୁଚିତ ହୁଏ । ଫୁସ୍‌ଫୁସ୍ ଭିତର ସ୍ପଂଜ୍ ଭଳି । ଏଥିରେ ବହୁ ସୂକ୍ଷ୍ମଶ୍ୱାସନଳୀ ଓ କ୍ଷୁଦ୍ର କ୍ଷୁଦ୍ର କୋଠରି ଅଛନ୍ତି । ଏହି କୋଠରିଗୁଡ଼ିକର ସଂଖ୍ୟା ପ୍ରାୟ ସାତ କୋଟି । ଏଗୁଡ଼ିକ କେବଳ ଅଣୁବୀକ୍ଷଣ ଯନ୍ତ୍ର ତଳେ ଦେଖାଯାଆନ୍ତି । ଏସବୁ କୋଠରିଗୁଡ଼ିକର ଆୟତନ ମିଶାଇ ଦେଲେ ଏହା ଶରୀରର ଚମର ଆୟତନଠାରୁ ପଚିଶଗୁଣ ଅଧିକ । ଏହି କୋଠରିଗୁଡ଼ିକୁ ପାଖାପାଖି ଖଞ୍ଜି ଦେଲେ ଏହା ତିରିଶ ଫୁଟ ଲମ୍ୱା ଓ କୋଡ଼ିଏ ଫୁଟ ଚଉଡ଼ା ପଡ଼ିଆର ସବୁ ଜାଗାକୁ ମାଡ଼ିବସିବ । ପୁଣି ଏହି ପ୍ରତି କୋଠରି ଚାରିକଡ଼ରେ ବୁଢ଼ିଆଣୀ ଜାଲ ଭଳି ସୂକ୍ଷ୍ମ ରକ୍ତବାହୀ ନାଳି (କ୍ୟାପିଲାରି) ଅଛନ୍ତି । ତାହାରି ଭିତରେ ଲୋହିତ ରକ୍ତ କଣିକାମାନେ ଘୂରି ବୁଲନ୍ତି । କୋଠରି ଭିତରେ ଥିବା ଜୀବନଦାନକାରୀ ଅମ୍ଳଜାନ ଲୋହିତ ରକ୍ତ କଣିକାରେ ମିଶି ରକ୍ତକୁ ସତେଜ କରିଦିଏ । ଏହି ଉପାୟରେ ରକ୍ତର ଦୂଷିତ ପଦାର୍ଥ ଅଙ୍ଗାରକାମ୍ଳ ବାଷ୍ପ ରୂପେ ମଧ୍ୟ ବାହାରିଯାଏ ।

ମାତ୍ର ଅଳ୍ପ କେଇ ମିନିଟ୍ ମଧ୍ୟରେ ସାରା ଶରୀରର ସବୁ ରକ୍ତ ଫୁସ୍‌ଫୁସ୍‌ର ଏଇ ସୂକ୍ଷ୍ମ ରକ୍ତନଳୀ (କ୍ୟାପିଲାରି) ମଧ୍ୟରେ ବିଶୁଦ୍ଧ

ହୋଇଥାଏ । ଫୁସ୍‌ଫୁସ୍‌ରେ ପଶିଲାବେଳକୁ ରକ୍ତ କଳା କଳା ଦିଶୁଥାଏ ଓ ବାହାରି ଗଲାବେଳକୁ ଉଜ୍ଜ୍ୱଳ ଲାଲ ରଂଗ ଦେଖାଯାଏ । ବଞ୍ଚିବା ପର୍ଯ୍ୟନ୍ତ ଦିନରାତି ଏହି କାମ ଫୁସ୍‌ଫୁସ୍ ମଧ୍ୟରେ ସୁଚାରୁ ରୂପେ ଚାଲୁଥାଏ ।

ଯକ୍ଷ୍ମାରୋଗର ଜୀବାଣୁ ଫୁସ୍‌ଫୁସ୍‌ର ଏହି ସୂକ୍ଷ୍ମ ଗଠନକୁ ନଷ୍ଟ କରିଦିଅନ୍ତି । ଗଛର କୋରଡ଼ ଭଳି ଫୁସ୍‌ଫୁସ୍ ମଧ୍ୟରେ କୋରଡ଼ ହୋଇ କାଶରେ ରକ୍ତ ପଡ଼େ । ବେଳେ ବେଳେ ଏତେ ରକ୍ତସ୍ରାବ ହୁଏ ଯେ ରୋଗୀଙ୍କୁ ଡାକ୍ତରଖାନାରେ ଭର୍ତ୍ତି ହୋଇ ସାଲାଇନ ଓ ରକ୍ତ ଇଂଜେକ୍‌ସନ୍ ଶିରାରେ ନେବା ଆବଶ୍ୟକ ହୋଇଥାଏ ।

କେତେକ ରୋଗୀଙ୍କର ଫୁସ୍‌ଫୁସ୍‌ର କୋଠରିଗୁଡ଼ିକ (ଆଲ୍‌ଭିଓଲାଇ) ଫୁଟି ପବନ ବାହାରିଯାଏ । ଏହି ପବନ ଅଧିକ ମାତ୍ରାରେ ବାହାରି ଫୁସ୍‌ଫୁସ୍‌କୁ ଆବୃତ୍ତ କରି ରହିଥିବା ଝିଲି ପରଦା ପାର୍ଶ୍ୱକ ମଧ୍ୟରେ ଜମିଯାଏ । ଫୁଟ୍‌ବଲ୍ ବ୍ଲାଡ଼ର୍ ଭିତ୍‌ରୁ ପବନ ବାହାରିଗଲେ ଏହା ଯେଉଳି ସିମିଟି ଯାଏ, ଫୁସ୍‌ଫୁସ୍ ସେମିତି ଏହି ଜମିଥିବା ପବନ ପ୍ରଭାବରେ ସିମିଟିଯାଏ । ଏହାକୁ 'କୋଲାପ୍‌ସ୍' କହନ୍ତି । ଏହି ଅବସ୍ଥାରେ ନିଃଶ୍ୱାସ ପ୍ରଶ୍ୱାସ ନେବା ଅତି କଷ୍ଟ ହୁଏ । ରକ୍ତ ଶୋଧନ ହୁଏ ନାହିଁ । ଜରୁରୀକାଳୀନ ଭିତିରେ ଏହାକୁ ଚିକିତ୍ସା ନ କଲେ ରୋଗୀ ମୃତ୍ୟୁ ମୁଖରେ ପଡ଼େ । ଡାକ୍ତରମାନେ ଏହାକୁ ଚିହ୍ନି ଏକ ନିର୍ଦ୍ଦିଷ୍ଟ ଉପାୟରେ ଛାତି ଫୁଟାଇ ପବନ ବାହାର କରନ୍ତି । ଯକ୍ଷ୍ମାରୋଗର ଏହି ଜଟିଳତାର ଡାକ୍ତରୀ ନାମ 'ନିମୋଥୋରାକ୍‌ସ୍' ।

କୌଣସି କୌଣସି ରୋଗୀଙ୍କର ପାର୍ଶ୍ୱକ ଫୁସ୍‌ଫୁସ୍ ଆବରଣ (ପ୍ଲୁରା) ମଧ୍ୟରେ ପାଣି ଭଳି ପଦାର୍ଥ ଜମିଯାଏ । ଏହାକୁ ଡାକ୍ତରୀ ଭାଷାରେ 'ପ୍ଲୁରାଲ ଇଫ୍ୟୁଜନ୍' କହନ୍ତି । ଏଥିରେ ମଧ୍ୟ ନିଃଶ୍ୱାସ ପ୍ରଶ୍ୱାସ ନେବାରେ କଷ୍ଟ ହୁଏ । ଅଳ୍ପ ପାଣି ଜମିଥିଲେ ଏହା ଔଷଧ ଖାଇଲେ ଭଲ ହୋଇଯାଏ । ଅଧିକ ପାଣି ଜମିଥିଲେ ଏହାକୁ ପିଠି ଫୁଟାଇ ଇଂଜେକ୍‌ସନ୍ ସିରିଞ୍ଜ୍ ମାଧ୍ୟମରେ କାଢ଼ିବାକୁ ପଡ଼େ । ଏପରି ରୋଗରେ ଠିକ୍ ଭାବରେ ଚିକିତ୍ସା ନ ହେଲେ ରୋଗୀ ମରିଯାଏ ।

କେତେକ ରୋଗୀଙ୍କର ଜଟିଳତା ଦେଖା ଦେଇ ସୂକ୍ଷ୍ମ ଶ୍ୱାସନଳୀ ଶ୍ୱଶନିକାରେ ସବୁବେଳେ କଫ ତିଆରି ହୁଏ । ଏଥିରେ ପୂଜ କରୁଥିବା ଜୀବାଣୁମାନେ ବଢ଼ିବା ଦ୍ୱାରା ଖଙ୍କାର ବହୁତ ଗନ୍ଧ ହୁଏ । ରୋଗୀ ସକାଳୁ ପୁଳା ପୁଳା ଖଙ୍କାର କାଢ଼େ । ଏ ଖଙ୍କାର ଏପରି ଗନ୍ଧ ହୁଏ ଯେ ବଡ଼ ସାନ ମାଛି ସବୁ ଏହି ଖଙ୍କାର ଗନ୍ଧରେ ଟାଣି ହୋଇ ଆସି ଆଉ ଯାଆନ୍ତି ନାହିଁ । ଏହା ଏକ ଅତି ଜଟିଳ ଅବସ୍ଥା । ଯକ୍ଷ୍ମାରୋଗ ଭଲ ହେଲା ପରେ ବି ଏହା ଭଲ ହୁଏ ନାହିଁ । ଏହାକୁ 'ବ୍ରୋଙ୍କିଏ ଟାକ୍‌ସିସ୍' କହନ୍ତି । ରୋଗୀର କାଶ କଫ ଲକ୍ଷଣ ଲାଗି ରହି ଅବସ୍ଥା ଖରାପ ହେଲେ ଫୁସ୍‌ଫୁସ୍‌ରେ 'ଅସ୍ତ୍ରୋପଚାର' କରି ଏହା ଭଲ କରାଯାଏ ।

## ଯକ୍ଷ୍ମାରୋଗୀ ଓ ପରିବାର :

ପରିବାରବର୍ଗଙ୍କ ସୁରକ୍ଷା ପାଇଁ ଓ ସମାଜରେ ଟିବି ବା ଯକ୍ଷ୍ମାରୋଗ ନ ବ୍ୟାପିବା ପାଇଁ ପ୍ରତ୍ୟେକ ରୋଗୀ ସଚେତନ ହେବା ଆବଶ୍ୟକ । ଖଙ୍କାରରେ ଛିଙ୍କ ଓ କାଶରେ ଏହି ଜୀବାଣୁ ସୁସ୍ଥ ଲୋକଙ୍କ ଦେହକୁ ଚାଲି ଯାଉଥିବାରୁ ଛିଙ୍କ କାଶ ସମୟରେ ମୁହଁରେ ରୁମାଲ

ଦେବା ଉଚିତ । ପଦାରେ ଛେପ ଖଙ୍କାର ପକାଇବା ଭଲ ନୁହେଁ । ପ୍ରତ୍ୟେକ ପିଲାଙ୍କୁ ବି.ସି.ଜି. ଟୀକା ଦେବା ଦରକାର ।

ସଂକ୍ରାମକ ଯକ୍ଷ୍ମାରୋଗୀଙ୍କ ସଂସ୍ପର୍ଶରେ ଆସୁଥିବା ପରିବାରର ପ୍ରତ୍ୟେକ ଲୋକ ନିଜ ଛେପ ଖଙ୍କାର ପରୀକ୍ଷା କରାଇବା ଦରକାର । ଖଙ୍କାରରେ ଜୀବାଣୁ (ଏ.ଏଫ୍.ବି.) ନ ବାହାରିଲେ ଛାତିର ଏକ୍ସରେ କରିବା ଉଚିତ୍ ।

ପାଞ୍ଚବର୍ଷରୁ କମ୍ ପିଲାଙ୍କର ଚର୍ମର ମାଣ୍ଟୁକ୍ସ୍ ପରୀକ୍ଷା କରାଇବା ଦରକାର । ଯଦି ପିଲାଠାରେ କାଶ ଜ୍ୱର ଲାଗି ରହେ, ଓଜନ କମିଯାଏ ଏବଂ ମାଣ୍ଟୁକ୍ସ୍ ପରୀକ୍ଷା ଅସ୍ତିବାଚକ (ପଜିଟିଭ୍) ହୁଏ ତେବେ ପିଲାକୁ ଛଅମାସ ପାଇଁ ଯକ୍ଷ୍ମାରୋଗର ସଘନ ଚିକିତ୍ସା କରାଯାଏ । ରୋଗର ଲକ୍ଷଣ ପ୍ରକାଶ ନ ପାଇଥିଲେ ରୋଗୀର ସଂସ୍ପର୍ଶରେ ଆସୁଥିବା ସବୁ ପିଲାଙ୍କୁ ତିନିମାସ ପାଇଁ ଦୁଇଟି ମାତ୍ର ଔଷଧ (କେମୋ ପ୍ରୋଫାଇଲାକ୍ସିସ୍) ଖାଇବାକୁ ଦିଆଯାଏ ।

## ଆମେ ଯକ୍ଷ୍ମାରୋଗ ଚିକିତ୍ସା କରିବା କାହିଁକି ?

ଯକ୍ଷ୍ମାରୋଗ ଏକ କ୍ଷୟ ରୋଗ । ଏଥିରେ ରୋଗୀକୁ ଜ୍ୱର ହୁଏ । ଓଜନ କମିଯାଏ । ଅତି ଦୁର୍ବଳ ଲାଗେ । ଖଙ୍କାର, କାଶ ଲାଗିରହେ । କାଶରେ କଫରେ ରକ୍ତ ପଡ଼େ । ଫଳରେ ସେ ନିଜର ଗୁଜୁରାଣ ମେଣ୍ଟେଇବା ପାଇଁ କୌଣସି କାମ କରିପାରେ ନାହିଁ । ଆଧୁନିକ ଚିକିତ୍ସାରେ ଯକ୍ଷ୍ମାରୋଗ ଶୀଘ୍ର ସଂପୂର୍ଣ୍ଣ ଭଲ ହୋଇ ଯାଉଥିବାରୁ ରୋଗୀ କାମରୁ ଛୁଟି ନେବା ଦରକାର ପଡ଼େ ନାହିଁ । ପରିବାରର ଆର୍ଥିକ ଅବସ୍ଥା ଖରାପ ହୁଏ ନାହିଁ । ଠିକ୍ ଠିକ୍ ଚିକିତ୍ସା

ହେଲେ ରୋଗ ପରିବାର ଭିତରେ ଓ ସମାଜ ଭିତରେ ବ୍ୟାପୀ ପାରେ ନାହିଁ । ପ୍ରଥମ ଅବସ୍ଥାରେ ରୋଗ ଚିହ୍ନା ପଡ଼ିଲେ ଏବଂ ଠିକ୍ ଠିକ୍ ଚିକିତ୍ସା ହେଲେ ରୋଗୀ ନିଜ ପାଇଁ, ପରିବାର ଓ ସମାଜ ପାଇଁ ବୋଝ ହୁଏ ନାହିଁ ।

**ଶିଶୁ ଯକ୍ଷ୍ମାରୋଗ :**

ଶିଶୁମାନଙ୍କର ରୋଗ ପ୍ରତିରୋଧକାରୀ ଶକ୍ତି କମ୍ । ଫଳରେ ସେମାନଙ୍କୁ ସବୁପ୍ରକାର ସଂକ୍ରାମକ ରୋଗ ଅଧିକ ହୋଇଥାଏ । ଶିଶୁମାନଙ୍କର ସାଧାରଣ ସଂକ୍ରାମକ ରୋଗଗୁଡ଼ିକ ହେଲା – ଡିପ୍‌ଥେରିଆ, ଟିଟାନସ୍, ପୋଲିଓ, ହୁପିଙ୍ଗ୍ କାଶ, ମିଳିମିଳା, ଯକ୍ଷ୍ମା । ଏହିସବୁ ରୋଗ କିପରି ନ ହେବ ସେଥିପାଇଁ ଟୀକାଦାନର ବନ୍ଦୋବସ୍ତ ହୋଇଛି । ଏହାବ୍ୟତୀତ ଶିଶୁମାନଙ୍କର ଆଉ ଦୁଇଟି ସାଧାରଣ ସଂକ୍ରାମକ ରୋଗ ହେଲା ଝାଡ଼ା ଓ ଜର । ପାଣି ଫୁଟାଇ ଥଣ୍ଡା କରି ପିଇଲେ, ଖାଦ୍ୟ ପରିଷ୍କାର ପରିଚ୍ଛନ୍ନ ରଖି ଖାଇଲେ, ପରିବେଶ ସଫା ସୁତୁରା ରଖିଲେ ଝାଡ଼ା ଓ ଜ୍ୱର କମ୍ ହୁଏ ।

ଶିଶୁ ଯକ୍ଷ୍ମାରୋଗ ଚିହ୍ନିବା ସହଜ ନୁହେଁ । ଏହି ରୋଗରେ ପିଲା ଦୁର୍ବଳ ହୋଇଯାଏ । କେତେବେଳେ କିମିତି ଜର ହୁଏ । ପିଲା ଖାଏ ନାହିଁ । ଓଜନ କମିଯାଏ । ପିଲାର ଖେଳକୁଦ କମିଯାଏ । କାଶିଲେ ବି ଖଙ୍କାର ବାହାରେ ନାହିଁ । ଖଙ୍କାରକୁ ଯକ୍ଷ୍ମାରୋଗର ଜୀବାଣୁ (ଏ.ଏଫ୍.ବି.) ପାଇଁ ପରୀକ୍ଷା କଲେ ଜୀବାଣୁ ମଧ୍ୟ ବାହାରେ ନାହିଁ । ଅନେକ ପିଲା କାଶି କରି ଖଙ୍କାର ବାହାର କରିପାରନ୍ତି ନାହିଁ ।

ଗାଁ ଗହଳିରେ ଏହି ପିଲାମାନଙ୍କୁ "ଦୃଷ୍ଟି ହୋଇଛି, ଡାହାଣୀ ଲାଗିଛି" ବୋଲି ଝଡ଼ା, ଫୁଙ୍କା, ମନ୍ତ୍ରପାଣି ପିଆଇବା ପ୍ରଭୃତି ଚିକିତ୍ସାରେ ଶିଶୁ ଅବହେଳାରେ ମରିଯାଏ ।

ଗୁଣିଗାରେଡ଼ି, ଦୃଷ୍ଟି ପଡ଼ିବା ଇତ୍ୟାଦି ସବୁ ଅନ୍ଧବିଶ୍ୱାସ । ସେଥିରେ ବିଶ୍ୱାସ କରି ସନ୍ତାନଟିଏ ନଷ୍ଟ କରିବା ଉଚିତ୍ ନୁହେଁ । ଶିଶୁଟିଏ ସଂକ୍ରାମକ ରୋଗୀ ସଂପର୍କରେ ଆସିଲାପରେ ଏଭଳି ଲକ୍ଷଣ ପ୍ରକାଶ ପାଇଲେ ଡାକ୍ତରଙ୍କୁ ଦେଖାଇବା ଉଚିତ୍ ।

ଡାକ୍ତରମାନେ ଏଭଳି ଶିଶୁର ମାଣ୍ଟୁକ୍ସ ଟେଷ୍ଟ୍ ଓ ଛାତିର ଏକ୍ସରେ କରି ଯକ୍ଷ୍ମାରୋଗ ଚିହ୍ନନ୍ତି । ଶିଶୁକୁ ଛଅମାସ ପାଇଁ ଠିକ୍ ଠିକ୍ ଯକ୍ଷ୍ମାରୋଗ ଭଲ କରିବା ଔଷଧ ଖାଇବାକୁ ଦେଲେ ଶିଶୁ ସଂପୂର୍ଣ୍ଣ ଭଲ ହୋଇଯାଏ ।



ଶିଶୁ ଯକ୍ଷ୍ମାରୋଗ

ଶିଶୁ ଯକ୍ଷ୍ମାରୋଗ ନ ହେବା ପାଇଁ ସବୁ ନବଜାତ ଶିଶୁଙ୍କୁ ବି.ସି.ଜି. ଟୀକା ଦେଇ ଦେବା ଉଚିତ୍ ।

## ଲସିକା ଗ୍ରନ୍ଥି ଯକ୍ଷ୍ମାରୋଗ :

ଏ ପ୍ରକାର ଯକ୍ଷ୍ମାରୋଗ ଯୁବକ ଯୁବତୀଙ୍କଠାରେ ଅଧିକ ଦେଖାଯାଏ । ଏଥିରେ ବେକର ଗୋଟିଏ ପାଖ ଲସିକା ଗ୍ରନ୍ଥି ଫୁଲି ଲାଗି ଲାଗି ହୋଇ ଯୋଡ଼ି ହୋଇଯାଆନ୍ତି । କେତେକଙ୍କର କାଖତଳ ଗ୍ରନ୍ଥି ମଧ୍ୟ ଏହି ରୋଗରେ ଫୁଲିଯାଏ । କିଛି ଦିନ ଫୁଲି ରହିବା ପରେ ଏହାକୁ ଚିପିଲେ ପୁଚୁ ପୁଚୁ ହୁଏ । ଚିକିତ୍ସା ନ ହେଲେ ଏହା ଫାଟି ଏଥିରୁ ପ୍ରଥମ ଅବସ୍ଥାରେ ପାଣିଆ ପଦାର୍ଥ ଓ ପରବର୍ତ୍ତୀକାଳରେ ପୂଜ ମଧ୍ୟ ବୁହେ । ଏହା ସହଜରେ ଶୁଖେ ନାହିଁ । ଏ ରୋଗକୁ ଚିହ୍ନିବା ପାଇଁ ଲସିକା ଗ୍ରନ୍ଥି ଫୁଟାଇ ମାଂସ ପରୀକ୍ଷା କରିବାକୁ ପଡ଼େ । ଏହାକୁ ଡାକ୍ତରୀ ଭାଷାରେ 'ଆସ୍ପିରେସନ୍ ସାଇଟୋଲଜି' କହନ୍ତି । ଏ ପ୍ରକାର ପରୀକ୍ଷା ପାଇଁ କୌଣସି ନିଶା ବ୍ୟବହାର କରାଯାଏ ନାହିଁ । ରୋଗ ଦଶ ମିନିଟ୍ ମଧ୍ୟରେ ଚିହ୍ନା ପଡ଼ିଯାଏ । ଯକ୍ଷ୍ମାରୋଗ ପାଇଁ ନିର୍ଦ୍ଦିଷ୍ଟ ସମୟ ଚିକିତ୍ସା କଲେ ଏହା ଭଲ ହୋଇଯାଏ । ବଡ଼ ଲସିକା ଗ୍ରନ୍ଥି ବହୁଦିନ ଧରି ପୂଜ ଦେଉଥିଲେ ଏହାକୁ ଅପରେସନ୍ କରି ବାହାର କରି ଦିଆଯାଏ ।

## ଯକ୍ଷ୍ମାରୋଗ ସମ୍ବନ୍ଧୀୟ ସାମାଜିକ ସ୍ୱାସ୍ଥ୍ୟ ଶିକ୍ଷା :

ସ୍ୱାସ୍ଥ୍ୟ ଶିକ୍ଷା ଯକ୍ଷ୍ମାରୋଗ ନିରାକରଣରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରେ । ଯକ୍ଷ୍ମାରୋଗ ସମ୍ବନ୍ଧରେ ଆମ ସମାଜରେ ବହୁ ଅନ୍ଧ ବିଶ୍ୱାସ ଅଛି । ଯକ୍ଷ୍ମାରୋଗ ହୋଇଛି ଶୁଣିଲେ ଆମର ବହୁ ଉଚ୍ଚ ଶିକ୍ଷିତ ଲୋକ ରୋଗୀଙ୍କୁ ଭୟରେ ଛୁଅନ୍ତି ନାହିଁ । ରୋଗ ହୋଇଯିବା ଭୟରେ ତାଙ୍କ ପାଖକୁ ଯାଆନ୍ତି ନାହିଁ । ଏପରିକି ବାସନକୁସନ ଲୁଗାପଟା

ଅଲଗା କରି ଦିଅନ୍ତି । ଏହିସବୁ କଥା ରୋଗୀ ମନରେ ଦୁଃଖ ଦିଏ ଏବଂ ଅନ୍ଧବିଶ୍ୱାସକୁ ବଢ଼ାଇବାରେ ସାହାଯ୍ୟ କରେ ।

ପ୍ରକୃତରେ ରୋଗୀର ଖଙ୍କାରରେ ଥିବା ଜୀବାଣୁ ବାୟୁରେ ଥିବା ଜଳୀୟ ବାଷ୍ପ ସହିତ ମିଶି ଛୋଟ ଜଳକଣା ମାଧ୍ୟମରେ କାଶ ଛିଙ୍କ ଅବସ୍ଥାରେ ସୁସ୍ଥ ଲୋକ ଦେହରେ ପଶେ । ତେଣୁ ଖାଦ୍ୟପଦାର୍ଥ, ଲୁଗାପଟା, ଆସବାବ ପତ୍ର ବ୍ୟବହାର କଲେ ଏହା ଡେଇଁ ନ ଥାଏ ।

ଏହାବ୍ୟତୀତ ସହର ବଜାରରେ ଚଳପ୍ରଚଳ ହେଉଥିବା ବେଳେ ସଂକ୍ରାମକ ଯକ୍ଷ୍ମାରୋଗୀର ଖଙ୍କାର କାଶରୁ ମଧ୍ୟ ରୋଗ ସୁସ୍ଥ ଲୋକ ଦେହରେ ପଶିପାରେ । ଉଦାହରଣ ସ୍ୱରୂପ ସଂକ୍ରାମକ ଯକ୍ଷ୍ମାରୋଗ ଭୋଗୁଥିବା ରିକ୍ସାବାଲା, ରିକ୍ସାରେ ବସିଥିବା ସୁସ୍ଥଲୋକଙ୍କୁ ରୋଗୀ କରି ଦେଇ ପାରେ । ଟ୍ରେନ୍, ବସ୍‌ରେ ଯାଉଥିବା ବେଳେ ମଧ୍ୟ ଜଣେ ସୁସ୍ଥଲୋକ ସଂକ୍ରାମକ ଯକ୍ଷ୍ମାରୋଗୀର ସଂସ୍ପର୍ଶରେ ଆସିପାରେ । ତେଣୁ ନିଜ ଚିହ୍ନା, ପରିବାର ଲୋକଙ୍କୁ ହେୟ ମନେ କରିବା ଉଚିତ୍ ନୁହେଁ ।

ଶିକ୍ଷିତ ଲୋକମାନେ ଏ କଥା ଜାଣି ରୋଗୀ, ତାଙ୍କ ପରିବାରର ଲୋକ ଓ ବନ୍ଧୁବାନ୍ଧବଙ୍କ ମନରେ ପ୍ରତ୍ୟୟ ସୃଷ୍ଟି କରିବା ଆବଶ୍ୟକ ।

ଉପଯୁକ୍ତ ଚିକିତ୍ସାରେ ଯକ୍ଷ୍ମାରୋଗର ସଂକ୍ରାମକ ଅବସ୍ଥା ମାତ୍ର ଦୁଇମାସ ମଧ୍ୟରେ ଆୟତ ହୋଇଯାଏ । ତେଣୁ ରୋଗୀ ସହିତ ଚଳାଚଳ ହେବାରେ ଭୟ କରିବା ଉଚିତ୍ ନୁହେଁ ।

ବର୍ତ୍ତମାନ ଯକ୍ଷ୍ମା ଶତ ପ୍ରତିଶତ ଭଲ ହୋଇ ଯାଉଛି । ଏହା ବ୍ୟତୀତ କେତେକ କ୍ଷେତ୍ରରେ ସ୍ୱାସ୍ଥ୍ୟ କର୍ମଚାରୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସାମୟିକ ଔଷଧ ଦିଆଯିବାରୁ ରୋଗୀର ଆସ୍ଥା ମଧ୍ୟ ବଢ଼ିଯାଉଛି ।

ସାଧାରଣ ଲୋକ ବର୍ତ୍ତମାନ ଏ ରୋଗ ସମ୍ବନ୍ଧରେ ଜାଣିବା ବିଶେଷ ଜରୁରୀ ହୋଇ ପଡ଼ିଛି । ସ୍ୱାସ୍ଥ୍ୟ କର୍ମଚାରୀମାନେ ଗାଁ ଗାଁରେ ଏହି ରୋଗ ସମ୍ବନ୍ଧରେ ପ୍ରଚାର କଲାପରେ, ରେଡ଼ିଓ, ଟେଲିଭିଜନ ଓ ଖବରକାଗଜରୁ ରୋଗର ଲକ୍ଷଣ ସବୁ ଜାଣିଲା ପରେ, ଏପରି ଲକ୍ଷଣ ଭୋଗ କରୁଥିବା ଲୋକ ଯକ୍ଷ୍ମା ସ୍ୱାସ୍ଥ୍ୟ କର୍ମଚାରୀଙ୍କ ସହିତ ପରାମର୍ଶ କରି ଖଙ୍କାର ପରୀକ୍ଷା କରାଇ ନେବା ଉଚିତ୍ ।

କାଶ କଫ ତିନି ସପ୍ତାହରୁ ଊର୍ଦ୍ଧ୍ୱ ହେଲେ ଶିକ୍ଷିତ ଲୋକମାନେ ଏ ଭଳି ରୋଗୀଙ୍କୁ ଖଙ୍କାର ପରୀକ୍ଷା ଓ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ସମ୍ବନ୍ଧରେ ଧାରଣା ଦେବା ନିହାତି ଦରକାର । ଏଥିରେ ସେମାନଙ୍କର ମଧ୍ୟ ଲାଭ । କିଏ ଜାଣେ ? ଏହି ଖଙ୍କାର କାଢୁଥିବା ଲୋକଙ୍କ ଭିତରେ ଜଣେ ଜଣେ ସଂକ୍ରାମକ ଯକ୍ଷ୍ମାରୋଗୀ ବି ଥାଇ ପାରନ୍ତି ?

ରୋଗ ନିରୂପଣ ପରେ ଆଦୌ ହତୋତ୍ସାହ ହେବା ଉଚିତ୍ ନୁହେଁ । ଏ ରୋଗ ପାଇଁ ଆବଶ୍ୟକୀୟ ଔଷଧ ସରକାରୀ ଯକ୍ଷ୍ମାକେନ୍ଦ୍ରମାନଙ୍କରେ ମାଗଣାରେ ମିଳିଥାଏ । ଠିକ୍ ଠିକ୍ ଚିକିତ୍ସାରେ ଛଅମାସ ମଧ୍ୟରେ ପ୍ରାୟ ସବୁ ରୋଗୀ ଭଲ ହୋଇଯାଆନ୍ତି । ପରିବାରର ସବୁ ଲୋକ ଯେଉଁ ଖାଦ୍ୟ ଖାଉଛନ୍ତି, ସେହି ଖାଦ୍ୟ ଖାଇଲେ ଚଳିବ । ଅଧିକ ପୁଷ୍ଟିକର ଖାଦ୍ୟର ଆବଶ୍ୟକତା ନାହିଁ ।

କେବଳ ଆବଶ୍ୟକୀୟ ଔଷଧ ନିଷ୍ଠାପର ଭାବରେ ଛଅମାସ ଖାଇବା ଉଚିତ୍ । ଯେଉଁମାନଙ୍କର ଯକ୍ଷ୍ମାରୋଗ ବାହାରିଲା, ସେମାନଙ୍କର ନାମ ଓ ଠିକଣା ପଞ୍ଜୀକରଣ କରାଇବା ଦରକାର । କୌଣସି କାରଣରୁ ରୋଗୀ ନ ଆସି ପାରିଲେ ସ୍ୱାସ୍ଥ୍ୟ କର୍ମଚାରୀମାନେ ଚିଠି ଲେଖି କିମ୍ବା ନିଜେ ଯାଇ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସେମାନଙ୍କୁ ଔଷଧ ଖୁଆଇବେ ।

**ସ୍ତ୍ରୀ ଜନନେନ୍ଦ୍ରିୟ ଯକ୍ଷ୍ମାରୋଗ :**

ଭାରତରେ ସ୍ତ୍ରୀ ଜନନେନ୍ଦ୍ରିୟରେ ଯକ୍ଷ୍ମାରୋଗ ସନ୍ତାନ ହୀନତାର ଏକ କାରଣ । ସ୍ତ୍ରୀରୋଗ ବିଶେଷଜ୍ଞ ଡାକ୍ତର ମାଲକାନି, ସନ୍ତାନହୀନତା ପାଇଁ ଉଦ୍ଦିଷ୍ଟ କ୍ଲିନିକ୍‌ରେ ସ୍ତ୍ରୀଲୋକମାନଙ୍କୁ ପରୀକ୍ଷା କରି ଶହେରେ ପ୍ରାୟ ଦଶ ଜଣଙ୍କର ଜନନେନ୍ଦ୍ରିୟରେ ଯକ୍ଷ୍ମାରୋଗ ଥିବା ଉଲ୍ଲେଖ କରିଅଛନ୍ତି । ସ୍ୱାସ୍ଥ୍ୟ ଶିକ୍ଷା, ବିସିଜି ଟୀକା ନେବା, ପୁଷ୍ଟିକର ଖାଦ୍ୟ ଏହି ଅନୁପାତକୁ ବର୍ତ୍ତମାନ କିଛି କମାଇ ପାରିଥାଏ । ଏପ୍ରକାର ଯକ୍ଷ୍ମାରୋଗ ଯୁବାବସ୍ଥାରେ ଅଧିକ ଋତୁସ୍ରାବ ହେବାର ମଧ୍ୟ ଏକ କାରଣ ।

ସ୍ତ୍ରୀ ଜନନେନ୍ଦ୍ରିୟ ଯକ୍ଷ୍ମାରୋଗ, ଶରୀରର ଅନ୍ୟ ସ୍ଥାନରେ ଯକ୍ଷ୍ମାରୋଗ ଥିଲେ, ସେଠାରୁ ରକ୍ତ ଦ୍ୱାରା ବ୍ୟାପୀ ହୋଇଥାଏ । ଏହା ମୁଖ୍ୟତଃ ଫୁସ୍‌ଫୁସ୍, ଲସିକାଗ୍ରନ୍ଥି ଓ ଅସ୍ଥି ଯକ୍ଷ୍ମାରୁ ହୋଇଥାଏ ।

ସନ୍ତାନହୀନତା ଓ ଋତୁଚକ୍ର ଋତୁସ୍ରାବର ଗଣ୍ଡଗୋଳ ବ୍ୟତୀତ କେତେକଙ୍କର ଏହି ରୋଗରେ ତଳିପେଟରେ ଦରଜ ମଧ୍ୟ ହୁଏ । ଅନ୍ୟ ଜୀବାଣୁମାନେ ଡିମ୍ବାଶୟ ଓ ଡିମ୍ବବାହୀ ନଳୀ ମଧ୍ୟରେ ପୂଜ

ସୃଷ୍ଟି କରି ବେଳେ ବେଳେ ଏକ ଗୁଳ୍ମ ସୃଷ୍ଟି କରନ୍ତି । ଏହାକୁ ଡାକ୍ତରୀ ଭାଷାରେ ''ଟ୍ୟୁବୋ ଓଭାରିୟାନ୍ ମାସ'' କୁହାଯାଏ । କେତେକଙ୍କର ଏ ପ୍ରକାର ରୋଗରେ ସାଂଘାତିକ ପେଟ ମାରି ଜର ଓ ବାନ୍ତିହୁଏ । ଏଭଳି ସ୍ତ୍ରୀଲୋକଙ୍କର ଜରୁରୀକାଳିନ ଭିତ୍ତିରେ ଚିକିତ୍ସା ଆବଶ୍ୟକ ହୁଏ । ଏ ପ୍ରକାର ରୋଗୀମାନଙ୍କର ଛଅମାସ ସଂପୂର୍ଣ୍ଣ ଯକ୍ଷ୍ମାରୋଗ ଚିକିତ୍ସା କରିବା ଆବଶ୍ୟକ ।

## ପେଟ ଓ ଅନ୍ତନଳୀର ଯକ୍ଷ୍ମା :

ଏ ପ୍ରକାର ଯକ୍ଷ୍ମାରୋଗରେ କ୍ଷୁଦ୍ର ଅନ୍ତ୍ର, ପେଟକୁ ଘୋଡ଼ାଇ ରଖିଥିବା ଝିଲି ପରଦା (ପେରିଟୋନିଅମ), ପେଟ ଭିତରର ଲସିକା ଗ୍ରନ୍ଥିରେ ରୋଗ ହୋଇଥାଏ । ଏ ପ୍ରକାର ରୋଗରେ ପେଟ କାମୁଡ଼େ । ବାନ୍ତି ଲାଗେ । ଭୋକ କମିଯାଏ । ଅଳ୍ପ ଅଳ୍ପ ଜର ଲାଗିରହେ । ଓଜନ କମିଯାଏ ।

ଆଉ କେତେକ ରୋଗୀଙ୍କର ପେଟରେ ବାୟୁ ଭିଡ଼ାଏ, ପେଟ ଫୁଲାଇ ରଖେ, ପେଟ ଭିତରେ କଳକଳ ବଜବଜ ଶବ୍ଦ ଲାଗିରହେ । ବଦ ହଜମି ପତଳା ଝାଡ଼ା ଦିନକୁ ପାଞ୍ଚ ସାତବାର ହୁଏ । ଝାଡ଼ା ପାଞ୍ଚ ସାତ ଦିନ ହେଲାପରେ ଦୁଇ ତିନିଦିନ ପାଇଁ ଝାଡ଼ା ହୁଏ ନାହିଁ ।

ରୋଗ ବଢ଼ିଗଲେ ପେଟରେ ଅନ୍ତନଳୀ ଜାକିଯୁକି ହୋଇ ଗୁଳ୍ମହୋଇଯାଏ । ଏଭଳି ଅବସ୍ଥା ସାଂଘାତିକ ହେଲେ ଝାଡ଼ା ବନ୍ଦ ହୋଇଯାଏ । ବାୟୁ ଯିବା ବନ୍ଦ ହୋଇଯାଏ । ବାନ୍ତି ହୁଏ । ରୋଗୀ ଅତି ଦୁର୍ବଳ ଓ ରୁଗ୍ଣ ହୋଇଯାଏ । ଏଭଳି ଅବସ୍ଥା ହେଲେ ଜରୁରୀକାଳିନ ଭିତ୍ତିରେ ଅସ୍ତ୍ରୋପଚାର କରିବା ଆବଶ୍ୟକ ହୁଏ ।

କେତେକଙ୍କର ପେଟଯକ୍ଷ୍ମା, ଝିଲିପରଦା ପେରିଟୋନିୟମ ମଧ୍ୟରେ ହେଲେ ପେଟରେ ଜଳୀୟ ପଦାର୍ଥ ଜମି ଜଳ ଉଦରୀ ହୋଇଯାଏ । ଏଭଳି ରୋଗୀଙ୍କର ଜର ଅଧିକ ହୁଏ, ଝାଳ ବୁହେ, ଭୋକ କରେ ନାହିଁ, ପେଟ ଚିପିଲେ ଠାଏ ଠାଏ ହାତକୁ ମାଂସ ଗୋଳା ପରି ଲାଗେ । ଅଧିକ ଦରଜ ଲାଗେ । 'ଚକଟା ଅଟା' ଦଳିଲେ ହାତକୁ ଯେମିତି ଲାଗେ କେତେକଙ୍କର ପେଟ ଚିପିଲେ ହାତକୁ ସେମିତି ଲାଗେ ।

କିନ୍ତୁ ସୁଖର କଥା ଏସବୁ ପ୍ରକାର ପେଟ ଯକ୍ଷ୍ମା ଠିକ୍ ଭାବରେ ଚିକିତ୍ସା କଲେ ସଂପୂର୍ଣ୍ଣ ଭଲ ହୋଇଯାଏ, ଅପରେସନ୍ କରିବା ଆବଶ୍ୟକ ହୁଏ ନାହିଁ ।

## ଚର୍ମ ଯକ୍ଷ୍ମାରୋଗ :

ଚର୍ମ ଯକ୍ଷ୍ମାରୋଗ ବହୁ ରୂପରେ ଦେଖାଦିଏ । ଚର୍ମ ବିଷେଷଜ୍ଞ ପିଲସବରି କହନ୍ତି, ''ଯକ୍ଷ୍ମାରୋଗ ଜୀବାଣୁ ଚର୍ମରେ ପ୍ରବେଶ କଲାପରେ କାହାର ବଡ଼ ଭାଟୁଡ଼ି, କାହାର ବଡ଼ ବଡ଼ ବିଣ୍ଡି କାହାର ଅତି ସାଂଘାତିକ ଘା' ହୋଇଯାଏ । ଚର୍ମରେ ଏହା ବିଭିନ୍ନ ରୂପରେ ପ୍ରକାଶ ପାଉଥିବାରୁ ଚର୍ମ ବିଶେଷଜ୍ଞ ମାନେ ଏହାକୁ ଚିହ୍ନି ପାରନ୍ତି । ଅନ୍ୟ ଡାକ୍ତରଙ୍କ ପାଇଁ ଏହା ଚିହ୍ନିବା କଷ୍ଟ ସାଧ୍ୟ ହୋଇଥାଏ ।''

ଚର୍ମରେ ଏହି ପ୍ରକାର ବିଣ୍ଡି, ଯାଦୁରା କ୍ଷତ ମୁଖ୍ୟତଃ ଗୋଡ଼ରେ ହୋଇଥାଏ । ଏହା କୃଷକ ଏବଂ ଗାଈ ଗୋରୁ କାମ କରୁଥିବା ଲୋକଙ୍କର ବେଶୀ ହୁଏ । ମାଂସ କଟାଳୀ, ଶବ ପୋଷ୍ଟ ମର୍ଟମ କରୁଥିବା ଲୋକମାନଙ୍କର ବେଳେ ବେଳେ ଏହା ହାତରେ ମଧ୍ୟ ହୋଇଥାଏ । ଏହି ରୋଗକୁ ଯାଦୁରୋଗ ଭଳି ଛତ୍ରକରୋଗଠାରୁ

ପୃଥକ୍ କରିବା ପାଇଁ କେତେକ ପରୀକ୍ଷା କରାଯାଏ । ଏ ପ୍ରକାର ଚର୍ମଯକ୍ଷ୍ମାରୋଗକୁ ଡ଼ାକ୍ତରୀ ଭାଷାରେ 'ୱାର୍ଟି ଟ୍ୟୁବର କୁଲୋସିସ୍' କୁହାଯାଏ ।

ଚର୍ମ ଯକ୍ଷ୍ମାରୋଗରେ ବେଳେ ବେଳେ ଘା ହୋଇ ସହଜରେ ଶୁଖେ ନାହିଁ । ଏହାକୁ ଡାକ୍ତରୀ ଭାଷାରେ 'ଲୁପସ ଭଲଗାରିସ' କୁହାଯାଏ । 'ଲୁପସ' ଶବ୍ଦର ଅର୍ଥ ଭାଲୁ । ଭାଲୁ ରାଗିଲେ ଯେଭଳି ଦାନ୍ତ ଖିଙ୍କାରି ମାଡ଼ି ଆସେ ଏହି ଘା' ସେହିପରି ଲାଲ ଓ ଘା'ର ଧାର ଗୁଡ଼ିକ ଭୟଙ୍କର ଦିଶୁଥିବାରୁ ଏହାର ଏପରି ନାମ ଦିଆଯାଇଛି । ଏହା ମୁହଁରେ, ନାକ ପାଖରେ, ଗାଲରେ ହୋଇ ନାକ ଓ ଓଠ ଉପରକୁ ମାଡ଼ିଯାଏ । କେତେକଙ୍କର ଏହା ପିଚା, ଜଂଘ ଓ ଗୋଡ଼ରେ ମଧ୍ୟ ହୋଇଥାଏ । ଠିକ୍ ଠିକ୍ ଚିକିତ୍ସା ନହେଲେ, ଏହି ରୋଗ ନାକ ଖାଇଯାଇ ନାକକୁ 'ଶୁଆ ନାକ' ଭଳି କରିଦିଏ । ଚର୍ମ ଯକ୍ଷ୍ମାରୋଗରେ ଅନ୍ୟ ଯକ୍ଷ୍ମାରୋଗ ଭଳି ସଂପୂର୍ଣ୍ଣ ଚିକିତ୍ସା ଛଅମାସ ହେବା ଉଚିତ୍ ।

## ଏକାଧିକ ଔଷଧରେ ଭଲ ନ ହେଉ ଥିବା ଯକ୍ଷ୍ମାରୋଗ :

ଏହି ପ୍ରକାର ଯକ୍ଷ୍ମାରୋଗକୁ ଡାକ୍ତରୀ ଭାଷାରେ ମଲ୍‌ଟିଡ୍ରଗ୍ ରେଜିଷ୍ଟାଣ୍ଟ ଟିବି (ଏମ୍.ଡ୍ରି.ଆର୍. ଟି.ବି.) କୁହାଯାଏ । ଏହି ରୋଗରେ ଯକ୍ଷ୍ମାରୋଗ ପାଇଁ ବ୍ୟବହାର କରାଯାଉଥିବା ମୁଖ୍ୟ ଔଷଧ ରିଫାମ୍ ପିସିନ୍, ଆଇ.ଏନ୍.ଏଚ୍., ଇଥାମ୍ ବୁଟଲ, ପାଇରିଜିନାମାଇଡ୍, ଷ୍ଟ୍ରେପ୍ଟୋମାଇସିନ୍ ରୋଗୀଙ୍କ ଖଙ୍କାରରୁ ଜୀବାଣୁ ମାରି ପାରେ ନାହିଁ । ଏଭଳି ରୋଗୀଙ୍କ ସଂଖ୍ୟା ଏବେ ବଢ଼ିବାରେ ଲାଗିଛି । ଏହା ବର୍ତ୍ତମାନ ସରକାର ଓ ସ୍ୱାସ୍ଥ୍ୟ

କର୍ମଚାରୀଙ୍କର ମୁଣ୍ଡବ୍ୟଥାର କାରଣ ହେଲାଣି । ଏ ପ୍ରକାର ଜୀବାଣୁ ଦ୍ୱାରା ଆକ୍ରାନ୍ତ ଜଣେ ଯକ୍ଷ୍ମାରୋଗୀଙ୍କ ଚିକିତ୍ସା ପାଇଁ ଲକ୍ଷାଧିକ ଟଙ୍କା ଖର୍ଚ୍ଚ ହୁଏ ଏବଂ ସେଥିରୁ ଅଧିକାଂଶ ମୃତ୍ୟୁ ମୁଖରେ ପଡ଼ନ୍ତି । ଅଧାପନ୍ତରିଆ ଚିକିତ୍ସାରେ ଏହି ପ୍ରକାର ଜୀବାଣୁ ବେଶୀ ବଢ଼ନ୍ତି । ତେଣୁ ଯକ୍ଷ୍ମାରୋଗ ଚିକିତ୍ସାରେ ଆଦୌ ହେଳା କରିବା ଉଚିତ ନୁହେଁ ।

## ବର୍ତ୍ତମାନ ଯକ୍ଷ୍ମାରୋଗ ଉପରେ ଏତେ ଗୁରୁତ୍ୱ ଦିଆଯାଉଛି କାହିଁକି ?

ଏଡ୍‌ସ୍ ରାକ୍ଷସ ଆସିଲା ପରେ ବୃଦ୍ଧ ଯକ୍ଷ୍ମା ରାକ୍ଷସ ନବଯୌବନ ଲାଭ କରିଛି । ଏଡ୍‌ସ୍ ଭୂତାଣୁ ଦେହରେ ଥିଲେ ଅଧିକ ଯକ୍ଷ୍ମା ରୋଗ ହୁଏ । ଏ ପ୍ରକାର ଯକ୍ଷ୍ମା ରୋଗ ରୂପ ବଦଳାଏ । ବହୁ ରୋଗୀଙ୍କର ଏ ପ୍ରକାର ଯକ୍ଷ୍ମାରୋଗରେ ଖଙ୍କାରରେ ଏ.ଏଫ୍.ବି. ମିଳନ୍ତି ନାହିଁ କିମ୍ବା ଏକ୍ସରେ ପରୀକ୍ଷାରେ ଯକ୍ଷ୍ମାରୋଗର ଚିହ୍ନ ମିଳେନାହିଁ । ତେଣୁ ରୋଗ ଚିହ୍ନିବା କାଠିକର ପାଠ ହୋଇଯାଏ । ଠିକ୍ ଭାବରେ ଯକ୍ଷ୍ମାରୋଗ ଚିକିତ୍ସା ହେଲେ ଏହା ଆୟତ ହୋଇଯାଏ । ନଚେତ୍ ରୋଗୀ ଅଳ୍ପ ଦିନ ମଧ୍ୟରେ ମରିଯାଏ ।

ଯକ୍ଷ୍ମାରୋଗ ଚିକିତ୍ସା ପାଇଁ ବ୍ୟବହାର କରାଯାଉଥିବା ଥାୟାସିଟାଜୋନ୍ ଔଷଧ ଏଡ୍‌ସ୍ ଥିବା ଯକ୍ଷ୍ମାରୋଗୀଙ୍କୁ ଦିଆଯାଏ ନାହିଁ । ଷ୍ଟ୍ରେପ୍ଟୋମାଇସିନ୍ ଭଳି ଇଂଜେକ୍‌ସନ୍ ଏଭଳି ରୋଗୀଙ୍କୁ ଦେଲେ ଛୁଞ୍ଚି ଓ ସିରିଂଜର ବିଶୋଧନ ଏକାନ୍ତ ଜରୁରୀ ।

ଭାଗ୍ୟର କଥା ସୁଚିତ୍ରାଙ୍କ ରକ୍ତର ଏଲିସା ପରୀକ୍ଷାରେ ଏଡ୍‌ସ୍ ଭୂତାଣୁ (ଏଚ.ଆଇ.ଭି.) ମିଳିଲେ ନାହିଁ । ଯକ୍ଷ୍ମାରୋଗର ସଘନ ଚିକିତ୍ସାପରେ ଏବେ ସୁଚିତ୍ରା ସମ୍ପୂର୍ଣ୍ଣ ସୁସ୍ଥ ହୋଇ ଭଲରେ ଅଛନ୍ତି ।



ଯକ୍ଷ୍ମାରୋଗୀର ଛାତି ଏକ୍ସରେ
ଫୁସ୍‌ଫୁସ୍ ନଷ୍ଟ ହୋଇ ଏକାଧିକ
ଗର୍ତ୍ତ ହୋଇଯାଇଛି
କଳାଦାଗଗୁଡ଼ିକ ଗର୍ତ୍ତର ଚିହ୍ନ



ତୀର ଚିହ୍ନ ଦ୍ୱାରା ଚିହ୍ନିତ
ଯକ୍ଷ୍ମାରୋଗ ଦ୍ୱାରା
ଫୁସ୍‌ଫୁସ୍‌ରେ କୋରଡ଼ (ଗର୍ତ୍ତ)
ହୋଇଯାଇଛି